# ଭଗବାନ ବୁଦ୍ଧଙ୍କ
# ଅମିୟ ବାଣୀ



ରାମକୃଷ୍ଣ ମଠ
ଭୁବନେଶ୍ୱର

ପ୍ରକାଶକ
**ସ୍ୱାମୀ ଆତ୍ମପ୍ରଭାନନ୍ଦ**
ଅଧ୍ୟକ୍ଷ, ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର–୭୫୧ ୦୦୨
ଫୋନ୍ : (୦୬୭୪) ୨୪୩ ୦୦୫୯, ୨୪୩ ୨୦୨୮
Email : bhubaneswar@rkmm.org



ପ୍ରଥମ ସଂସ୍କରଣ : ୩ ଜୁନ୍ ୨୦୦୪
**ତୃତୀୟ ପୁନର୍ମୁଦ୍ରଣ : ୨୦ ଏପ୍ରିଲ୍ ୨୦୧୮**
ଶ୍ରୀଶଙ୍କରାଚାର୍ଯ୍ୟ ଜୟନ୍ତୀ
୧୦୦୦

**ମୂଲ୍ୟ : ଟ. ୨୫.୦୦**

ମୁଦ୍ରାକର:
ହିନ୍ଦୁସ୍ଥାନ ପ୍ରିଣ୍ଟିଙ୍ଗ ଏଣ୍ଡ ବାଇଣ୍ଡିଂ ୱାର୍କସ୍
ଏ/୪୮, ରାମେଶ୍ୱର ପାଟଣା
ଭୁବନେଶ୍ୱର - ୨

***BHAGAVANA BUDDHANKA AMIYA VANI*** **:** Published by Ramakrishna Math, Vivekananda Marg, Bhubaneswar-751 002; 1st Edition 3rd Reprint on 20th April 2018; **Price : ₹. Twenty-five Only.**

# ପ୍ରକାଶକଙ୍କ ନିବେଦନ

ଭାରତବର୍ଷରୁ ହିଁ ବୌଦ୍ଧଧର୍ମ ପୃଥିବୀର ବିଭିନ୍ନ ଦେଶକୁ ପ୍ରସାର ଲାଭ କରିଛି । ଭଗବାନ ବୁଦ୍ଧଙ୍କ ଜୀବନୀ ଓ ଉପଦେଶାବଳୀ ବିଭିନ୍ନ ଦେଶର ତଥା ଭାରତୀୟ ଭାଷାମାନଙ୍କରେ ପ୍ରକାଶିତ ହୋଇ ଆଧ୍ୟାତ୍ମିକ ଜୀବନକୁ ଦିଗ୍‌ଦର୍ଶନ ଦେଇଆସିଛି । ଭଗବାନ ବୁଦ୍ଧ ଜଣେ ଅବତାର ରୂପେ ଭାରତୀୟମାନଙ୍କର ଆରାଧ୍ୟ ଦେବତା ହୋଇ ପୂଜା ପାଇ ଆସିଛନ୍ତି । ତାଙ୍କର କାଳଜୟୀ ଉପଦେଶଗୁଡ଼ିକ ପାଠକମାନଙ୍କ ନିକଟରେ ପହଞ୍ଚାଇବା ପାଇଁ ଆମର ପ୍ରୟାସସ୍ୱରୂପ, ରାମକୃଷ୍ଣ ମଠ, ଚେନ୍ନାଇରୁ ଇଂରାଜୀରେ ପ୍ରକାଶିତ Thus Spake The Buddha ପୁସ୍ତକଟିକୁ ଠାକୁରଙ୍କର ଭକ୍ତ ଶ୍ରୀ ସଚ୍ଚିଦାନନ୍ଦ ପଟ୍ଟନାୟକ **'ଭଗବାନ ବୁଦ୍ଧଙ୍କ ଅମିୟ ବାଣୀ'** ନାମରେ ଓଡ଼ିଆ ଭାଷାରେ ଅନୁବାଦ କରିଛନ୍ତି । ତାଙ୍କର ଏହି ନିଷ୍ଠାପର ଉଦ୍ୟମ ଓ ସେବା ଯୋଗୁଁ ଆମେ ତାଙ୍କର ଆଧ୍ୟାତ୍ମିକ ଜୀବନରେ ଉନ୍ନତି କାମନା କରୁଛୁ ।

ପୁସ୍ତକଟି ଓଡ଼ିଶାର ପାଠକପାଠିକାମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ଆମେ ଆଶା କରୁ ।

ଭୁବନେଶ୍ୱର
ତା. ୩ ଜୁନ୍ ୨୦୦୪

ବିନୀତ
ପ୍ରକାଶକ

# ସୂଚୀପତ୍ର

| ବିଷୟ | | ପୃଷ୍ଠା |
|---|---|---|




# ସ୍ତୁତି

ବୁଦ୍ଧଂ ଶରଣଂ ଗଚ୍ଛାମି ।
ଧର୍ମଂ ଶରଣଂ ଗଚ୍ଛାମି ।
ସଂଘଂ ଶରଣଂ ଗଚ୍ଛାମି ।

X X X

ମୁଁ ବୁଦ୍ଧଙ୍କର ଶରଣାପନ୍ନ ହେଉଅଛି ।
ମୁଁ ଧର୍ମର ଶରଣାପନ୍ନ ହେଉଅଛି ।
ମୁଁ ସଂଘର ଶରଣାପନ୍ନ ହେଉଅଛି ।

# ସ୍ତୁତି

ହେ ଅନନ୍ତ ଜୀବନ !

ହେ ପରମ ମୃତ୍ୟୁ !

ମୁଁ ତୁମରି ଶରଣ ନେଉଛି ।

ତୁମରି ଅଗ୍ନିରେ ମୋତେ ମୋର

ନିର୍ବାପିତ ଦୀପକୁ ପ୍ରଜ୍ୱଳିତ

କରିବାକୁ ଦିଅ ।

ମୋର ଭୁଲତା ଉପରେ ତୁମର ମହିମାକୁ ଅଙ୍କିତ କରିଦେଇ, ମୋର ତ୍ରୁଟିକୁ ଚିରକାଳ ପାଇଁ ନିଶ୍ଚିହ୍ନ କରିଦିଅ ।

ତୁମରି ଚରଣ ହେଉଛି ରୂପାନ୍ତରକାରୀ ଅଗ୍ନି, ଯାହାକି ମୋତେ ଆଉଟି ଦେଇ, ସମସ୍ତ ଖାଦ କାଢ଼ି ନେଇ, ମୋତେ ଶୁଦ୍ଧ-ସୁବର୍ଣ୍ଣରେ ପରିଣତ କରିଦେବ । ମୋର ସମସ୍ତ କଳୁଷ-କାଳିମା ସେହି ଅଗ୍ନିରେ ଭସ୍ମୀଭୂତ ହୋଇଯିବ, ଆଉ ଭ୍ରମଜାଲ ସଂପୂର୍ଣ୍ଣ ରୂପେ ବିଦୀର୍ଣ୍ଣ ହୋଇଯିବ ।

—ରବୀନ୍ଦ୍ରନାଥ ଠାକୁର



# ଭଗବାନ ବୁଦ୍ଧଙ୍କ ସଂକ୍ଷିପ୍ତ ଜୀବନୀ

କପିଳବାସ୍ତୁ ନିକଟବର୍ତ୍ତୀ ଲୁମ୍ବିନୀ ନଗରୀରେ ଭଗବାନ ବୁଦ୍ଧ ରାଜା ଶୁଦ୍ଧୋଦନ ଓ ରାଣୀ ମାୟାଦେବୀଙ୍କର ପୁତ୍ର ରୂପରେ ଜନ୍ମ ଗ୍ରହଣ କରିଥିଲେ । ଏହି ଉପଲକ୍ଷେ ସାରା ନଗରୀରେ ଆନନ୍ଦ ଉତ୍ସବ ପାଳିତ ହୋଇଥିଲା । କୋଳରେ ଅନିନ୍ଦ୍ୟ ସୁନ୍ଦର ଦେବତୁଲ୍ୟ ଶିଶୁପୁତ୍ରଟିଏ ପାଇ ରାଜା-ରାଣୀଙ୍କର ଆନନ୍ଦ କହିଲେ ନ ସରେ । ରାଜକୁମାରଙ୍କ ନାମକରଣ ଉତ୍ସବ ଦିନ ତାଙ୍କ ନାମ 'ସିଦ୍ଧାର୍ଥ' ରଖାଯାଇଥିଲା । ସିଦ୍ଧାର୍ଥର ଅର୍ଥ, ଯାହାଙ୍କର ଆଗମନର ଉଦ୍ଦେଶ୍ୟ ସିଦ୍ଧ ହୋଇଛି, ପୂର୍ଣ୍ଣ ହୋଇଛି ।

ନାମକରଣ ଦିନ ଶିଶୁକୁ ଆଶୀର୍ବାଦ ପ୍ରଦାନ କରିବା ପାଇଁ ରାଜା ଶୁଦ୍ଧୋଦନ ଜଣେ ବିଦ୍ୱାନ୍ ଋଷିଙ୍କୁ ରାଜପ୍ରାସାଦକୁ ଆମନ୍ତ୍ରଣ କରିଥିଲେ । ଋଷି ଶିଶୁଟିକୁ ଦେଖିବା ମାତ୍ରେ, ଜାଣି ପାରିଥିଲେ ଯେ ଜଣେ ମହାପୁରୁଷଙ୍କର ଧରାବତରଣ ହୋଇଛି । ସେ ଭବିଷ୍ୟତ ବାଣୀ ଶୁଣାଇ କହିଥିଲେ– 'ଅଲୌକିକ ଲକ୍ଷଣମାନ ନେଇ ଜନ୍ମ ହୋଇଥିବା ଏହି ଶିଶୁ ପରବର୍ତ୍ତୀ କାଳରେ ଜଗତର ଲୋକମାନଙ୍କୁ ମୁକ୍ତିର ପଥ ଦେଖାଇବ ।' ଋଷି ରାଜାଙ୍କୁ ଚେତାବନୀ ଶୁଣାଇ କହିଥିଲେ, 'ଏ ବାଳକ ବଡ଼ ହେଲେ, କୌଣସି ସମୟରେ ଯଦି ଜଣେ ରୋଗୀ, ଜଣେ ବୃଦ୍ଧ ଓ ଗୋଟିଏ ଶବ ଦେଖିବାକୁ ପାଏ, ତା'ହେଲେ ସେ ସଂସାର ପ୍ରତି ବୀତସ୍ପୃହ ହୋଇ ଗୃହ ତ୍ୟାଗ କରି ଚାଲିଯାଇପାରେ ।' ରାଜା ଶୁଦ୍ଧୋଦନ ଜ୍ୟୋତିଷଙ୍କର ଏ ପ୍ରକାର ଭବିଷ୍ୟତ ବାଣୀ ଶୁଣି ଆତଙ୍କିତ ହୋଇପଡ଼ିଥିଲେ । ପରିଣତ ବୟସରେ ତାଙ୍କର ଏହି ପୁତ୍ରଟି କୁଳମଣ୍ଡନ କରିଛି, ସେ ପୁଣି ଗୃହତ୍ୟାଗୀ ହେବ ? ସେ ଯାହାହେଉ, ଶିଶୁଟି ଅତି ଆଦରରେ ଲାଳିତପାଳିତ ହୋଇ ବଡ଼ ହେବାରେ ଲାଗିଲା । ସିଦ୍ଧାର୍ଥ ଯୌବନରେ ପଦାର୍ପଣ କରନ୍ତେ, ପିତାମାତା ତାଙ୍କୁ ଅଳ୍ପ ବୟସରେ ବିବାହ ବନ୍ଧନରେ ଆବଦ୍ଧ କରିଦେଇଥିଲେ । ଉଦ୍ୟାନ ମଧ୍ୟରେ ଏକ ଅତି ସୁନ୍ଦର ରାଜମହଲ ନିର୍ମାଣ କରାଯାଇ ସେଠାରେ ସମସ୍ତ ସୁଖ ସମ୍ଭୋଗର ବ୍ୟବସ୍ଥା କରି ଦିଆଯାଇଥିଲା । ଏହି ବିଳାସବ୍ୟସନ-ପରିପୂର୍ଣ୍ଣ ପ୍ରାସାଦ ମଧ୍ୟରେ

ସିଦ୍ଧାର୍ଥ ତାଙ୍କର ନବଯୌବନସମ୍ପନ୍ନା ଅନିନ୍ଦ୍ୟସୁନ୍ଦରୀ ପତ୍ନୀ ଯଶୋଧାରାଙ୍କ ସହିତ ଜୀବନ ଅତିବାହିତ କରିବାକୁ ଲାଗିଲେ । ପ୍ରଥମାବସ୍ଥାରେ ସିଦ୍ଧାର୍ଥଙ୍କର ଦାମ୍ପତ୍ୟ ଜୀବନ ଅତି ଆନନ୍ଦରେ ବିତି ଯାଇଥିଲା । ରାଜା ଶୁଦ୍ଧୋଦନ ତାଙ୍କ ପୁତ୍ରକୁ ବସ୍ତୁତଃ ବନ୍ଦୀପ୍ରାୟ କରି ରଖିଥିଲେ । କିନ୍ତୁ ଯାହା ଅବଶ୍ୟମ୍ଭାବୀ, ତାକୁ ରୋକିବ କିଏ ?

ହାତୀ ଯେପରି ଶିକୁଳି ଦ୍ୱାରା ବନ୍ଧା ହୋଇଥିବା ଅବସ୍ଥାରେ ସେଥିରୁ ମୁକୁଳି ବାହାରକୁ ପଳାଇବା ପାଇଁ ଛଟପଟ ହୁଏ, ସେହିପରି ରାଜପ୍ରାସାଦର ସମସ୍ତ ସୁଖ ସମ୍ଭୋଗ ମଧ୍ୟରେ ଆବଦ୍ଧ ରାଜକୁମାର ସିଦ୍ଧାର୍ଥ ବାହାର ଦୁନିଆ ଦେଖିବା ପାଇଁ ବ୍ୟାକୁଳ ହୋଇଉଠିଲେ । ସେ ନିଜର ଇଚ୍ଛା ପିତାଙ୍କୁ ଜଣାଇଲେ । ରାଜା ଭାବିଥିଲେ ଯେ ପୁତ୍ର ଦାମ୍ପତ୍ୟ ଜୀବନରେ ସୁଖ ସମ୍ଭୋଗ ମଧ୍ୟରେ ଥାଇ ବୋଧହୁଏ ବାହାର ଜଗତକୁ ସଂପୂର୍ଣ୍ଣ ରୂପେ ଭୁଲି ଯାଇଥିବ । ମାତ୍ର ପୁତ୍ରର ଏହି ଅଭିଳାଷ ତାଙ୍କ ମନରେ ଉତ୍କଣ୍ଠାର ସୂତ୍ରପାତ କରିଥିଲା । କିନ୍ତୁ ସେ ପୁତ୍ରର ଇଚ୍ଛାକୁ ଏଡ଼ାଇ ଦେଇପାରିଲେ ନାହିଁ । ସେ ରାଜକୁମାରଙ୍କର ନଗର ପରିକ୍ରମାର ସମସ୍ତ ବ୍ୟବସ୍ଥା କରିଦେଲେ । ସମଗ୍ର ନଗରୀକୁ ସୁନ୍ଦର ଭାବରେ ସଜ୍ଜିତ କରାଗଲା । ରାଜକୁମାର ଯେଉଁ ପଥ ଦେଇ ଯାତ୍ରା କରିବେ ତାହାକୁ ସୁନ୍ଦର ତୋରଣ ଦ୍ୱାରା ସଜାଇ ଦିଆଗଲା । ପଥସାରା ବାଦ୍ୟସଂଗୀତର ଆୟୋଜନ କରାଗଲା ।

ରାଜକୁମାର ସିଦ୍ଧାର୍ଥ ଏକ ସୁସଜ୍ଜିତ ରଥରେ ଉପବେଶନ କରି ନଗର ବୁଲିବାକୁ ବାହାରିଲେ । ରାଜପଥର ଦୁଇପାର୍ଶ୍ୱରେ ନରନାରୀଗଣ ରାଜକୁମାରଙ୍କ ଉପରେ ପୁଷ୍ପବୃଷ୍ଟି କରୁଥାନ୍ତି । ରଥାରୂଢ଼ ହୋଇ ରାସ୍ତାରେ ଗତି କରୁ କରୁ ହଠାତ୍ ସିଦ୍ଧାର୍ଥଙ୍କର ଦୃଷ୍ଟି ବାଡ଼ିଟିଏ ଧରି ଥର ଥର ହୋଇ ଚାଲୁଥିବା ଲୋଳିତ ଚର୍ମରେ ଢଙ୍କା ଅସ୍ଥିପିଞ୍ଜରା ଦେଖାଯାଉଥିବା ଜଣେ ବୃଦ୍ଧ ବ୍ୟକ୍ତିଙ୍କ ଉପରେ ପଡ଼ିଲା । ସାରଥୀକୁ ପଚାରିବାରୁ ସେ ବୁଝାଇ ଦେଇ କହିଲା, ଏହି ବ୍ୟକ୍ତି ହେଉଛନ୍ତି ଜଣେ ବୃଦ୍ଧ । ବର୍ତ୍ତମାନ ମରଣପଥର ଯାତ୍ରୀ । ସାରଥୀ ମୁହଁରୁ ଏହା ଶୁଣି ସିଦ୍ଧାର୍ଥ ଚମକି ପଡ଼ିଲେ । ସେ ସେହି ବୃଦ୍ଧ ବ୍ୟକ୍ତିଙ୍କୁ ନିରୀକ୍ଷଣ କରୁ କରୁ ଭାବିବାକୁ ଲାଗିଲେ, ଏହା ହିଁ ତା'ହେଲେ ବାର୍ଦ୍ଧକ୍ୟ,

ମନୁଷ୍ୟ ଜୀବନର ଅନ୍ତିମ ଅବସ୍ଥା ! କୁଆଡ଼େ ଗଲା ରୂପ ଯୌବନ, କୁଆଡ଼େ ଗଲା ଜୀବନର ଉପଭୋଗ ? ଆଜି ଏକି ଦଶା ? ତା'ହେଲେ ସବୁକିଛି କ୍ଷଣଭଙ୍ଗୁର ? ଗଭୀର ଚିନ୍ତାଗ୍ରସ୍ତ ଅବସ୍ଥାରେ ରାଜକୁମାର ଆଗକୁ ଯାଉ ଯାଉ ପଥରେ ଜଣେ ରୋଗାକ୍ରାନ୍ତ ବ୍ୟକ୍ତିଙ୍କୁ ଦେଖିଲେ । ରୁଗ୍‌ଣ ବ୍ୟକ୍ତିଟି ରୋଗ ଯନ୍ତ୍ରଣାରେ ଛଟପଟ ହୋଇ ଅସହାୟ ଅବସ୍ଥାରେ ପଥପାର୍ଶ୍ୱରେ ପଡ଼ି ରହିଥାଏ ଏବଂ ଆର୍ତ୍ତ ଚିତ୍କାର କରୁଥାଏ । ଏ ଦୃଶ୍ୟ ଦେଖି ସିଦ୍ଧାର୍ଥ ହୃଦୟରେ ମର୍ମନ୍ତୁଦ ଯନ୍ତ୍ରଣା ଅନୁଭବ କଲେ । କରୁଣା-ବିଗଳିତ ନୟନରେ ରୋଗୀଟିକୁ ଚାହିଁ ରହି ସିଦ୍ଧାର୍ଥ ଅଶ୍ରୁପାତ କରିବାକୁ ଲାଗିଲେ । ରାଜକୁମାରଙ୍କର ଏପରି ବିଷାଦଭରା ଅବସ୍ଥା ଦେଖି ସାରଥୀ ଦ୍ରୁତଗତିରେ ରଥକୁ ଆଗକୁ ନେଇ ଯାଉ ଯାଉ, ଦାହ ହେବା ନିମନ୍ତେ ଶ୍ମଶାନକୁ ନିଆ ଯାଉଥିବା ଏକ ଶବ ରାଜକୁମାରଙ୍କର ଦୃଷ୍ଟିଗୋଚର ହେଲା । ପଚାରିବାରୁ, ତାହା ଏକ ମୃତ ଶରୀର ବୋଲି ସାରଥୀ ତାଙ୍କୁ ବୁଝାଇଦେଲା । ଏହା ଶୁଣି ସିଦ୍ଧାର୍ଥ ସ୍ତମ୍ଭୀଭୂତ ହୋଇଗଲେ । ସେ ଭାବିଲେ ତାହେଲେ ଏହିପରି ଦିନେ ମନୁଷ୍ୟକୁ ମୃତ୍ୟୁ ମୁଖରେ ପଡ଼ିବାକୁ ହୁଏ ? ମୃତ୍ୟୁରେ ହିଁ ଜୀବନର ସବୁକିଛି ସୁଖଭୋଗ, ସବୁ ଆଶା ଆକାଙ୍କ୍ଷା ଆଉ ଆତ୍ମବଡ଼ିମା ବିଲୁପ୍ତ ହୋଇଯାଏ । ଘୋର ଚିନ୍ତାଗ୍ରସ୍ତ ଅବସ୍ଥାରେ ସିଦ୍ଧାର୍ଥଙ୍କ ଆଖିରେ ଲୁହ ଭରି ଯାଇଥିଲା । ସେ ଆଉ ଆଗକୁ ନ ଯାଇ ରଥକୁ ଅଟକାଇ ନୀରବରେ କିଛି ସମୟ ବସି ରହିଲେ । ଏହି ସମୟରେ ପଥରେ ଯାଉଥିବା ଜଣେ ଗୈରିକ ବସନ-ଧାରୀ ସନ୍ନ୍ୟାସୀଙ୍କୁ ଦେଖି ରାଜକୁମାର 'ୟେ କିଏ' ବୋଲି ସାରଥୀକୁ ପ୍ରଶ୍ନ କଲେ । ସାରଥୀ ବୁଝାଇ ଦେଇ କହିଲା ଯେ ଏହି ବ୍ୟକ୍ତିଜଣକ ହେଉଛନ୍ତି ଜଣେ ସଂସାରତ୍ୟାଗୀ ସନ୍ନ୍ୟାସୀ । ସନ୍ନ୍ୟାସୀଙ୍କୁ ଦେଖିବାକ୍ଷଣି ସିଦ୍ଧାର୍ଥଙ୍କ ମନରେ ହଠାତ୍ ବୈରାଗ୍ୟ ଭାବ ଉଦୟ ହେଲା । ତାଙ୍କର ମନ ଘୋର ଆନ୍ଦୋଳିତ ହୋଇଉଠିଲା । ଏ ସମସ୍ତ ଦୃଶ୍ୟ ତାଙ୍କ ମନରେ ଘୋର ପ୍ରଭାବ ପକାଇଥିଲା । ଏପରି ବିଷାଦଗ୍ରସ୍ତ ଅବସ୍ଥାରେ ସିଦ୍ଧାର୍ଥ ଆଉ ଆଗକୁ ନ ଯାଇ ରଥକୁ ରାଜମହଲକୁ ଫେରାଇ ନେବାଲାଗି ସାରଥୀକୁ ଆଦେଶ ଦେଲେ ।

# ଭଗବାନ ବୁଦ୍ଧଙ୍କ ଅମୀୟ ବାଣୀ

ସିଦ୍ଧାର୍ଥ ରାଜମହଲର ଦ୍ୱାରଦେଶରେ ରଥରୁ ଓହ୍ଲାଉଥିବା ସମୟରେ ଜଣେ ଦାସୀ ଧାଇଁ ଆସି ତାଙ୍କୁ ଏକ ଶୁଭ ସମ୍ବାଦ ଦେଲା । ସେ ଜାଣିବାକୁ ପାଇଲେ ଯେ ତାଙ୍କର ପତ୍ନୀ ଯଶୋଧାରା ଏକ ପୁତ୍ର ସନ୍ତାନର ଜନନୀ ହୋଇଛନ୍ତି । ଏହି ସମାଚାର ଶୁଣି ସିଦ୍ଧାର୍ଥ ଆନନ୍ଦିତ ହେବା ପରିବର୍ତ୍ତେ ବିଷାଦ ସାଗରରେ ବୁଡ଼ିଗଲେ । ସେ ଭାବିଲେ, ତାଙ୍କର ଏକ ପୁତ୍ର ଜନ୍ମ ହେବାର ଅର୍ଥ, ଏକ ବନ୍ଧନର କାରଣ ସୃଷ୍ଟି ହେଲା । ସେ ସେତେବେଳେ ସଂସାରର ବନ୍ଧନ ମଧ୍ୟରେ ଆବଦ୍ଧ ହୋଇ ରହିବା ଅବସ୍ଥାରେ ନ ଥିଲେ । ସତ୍ୟର ସନ୍ଧାନରେ ସଂସାର ତ୍ୟାଗ କରିବା ସେତେବେଳେ ତାଙ୍କ ମନକୁ ଆଚ୍ଛନ୍ନ କରି ରଖିଥାଏ । ପୁତ୍ର ସନ୍ତାନର ଆଗମନ ଯୋଗୁଁ ସମସ୍ତ ରାଜମହଲ ସେତେବେଳେ ଉତ୍ସବ ମୁଖରିତ ହୋଇଥିଲା । ଏହି ସୁଯୋଗ ଦେଖି ସିଦ୍ଧାର୍ଥ ନିଜ ଅଙ୍ଗରୁ ରାଜକୀୟ ବେଶଭୂଷା ଓ ଅଳଙ୍କାର ଆଦି କାଢ଼ିଦେଇ ପିତାମାତା ଓ ପତ୍ନୀପୁତ୍ରକୁ ତ୍ୟାଗ କରି ରାତ୍ରିର ଘନ ଅନ୍ଧକାର ମଧ୍ୟରେ ସମସ୍ତଙ୍କ ଅଜାଣତରେ ଘରୁ ଗୋଡ଼ କାଢ଼ି ଅଦୃଶ୍ୟ ହୋଇଯାଇଥିଲେ ।

ସିଦ୍ଧାର୍ଥ ପଦବ୍ରଜରେ ଯାଇ ଉରୁବିଲ୍ୱ (ବୁଦ୍ଧଗୟା) ନାମକ ଏକ ସ୍ଥାନରେ ପହଞ୍ଚି ସତ୍ୟାନୁସନ୍ଧାନରେ ବ୍ରତୀ ହୋଇ ଗୋଟିଏ ଅଶ୍ୱତ୍ଥ ମୂଳରେ ଧ୍ୟାନମଗ୍ନ ହୋଇ ବସି ରହିଲେ । ଦୀର୍ଘ ଛଅବର୍ଷ କାଳ କଠୋର ତପସ୍ୟା କରିବା ପରେ ସେ ତାଙ୍କର ମନୋବାଞ୍ଛିତ ଆତ୍ମଜ୍ଞାନ ବା ସିଦ୍ଧି ଲାଭ କରିଥିଲେ । ସେଦିନ ଥିଲା ବୈଶାଖ ମାସ ପୂର୍ଣ୍ଣମୀ, ତାଙ୍କର ଜନ୍ମ ଦିବସ । ସେହିଦିନ ହିଁ ସେ ପରମ ଜ୍ଞାନ ବୋଧିସତ୍ତ୍ୱ ବା ସାଧନାରେ ସିଦ୍ଧି ଲାଭ କରିଥିଲେ ।

ଏହାପରେ ସେ ତାଙ୍କର ସାଧନାଲବ୍ଧ ନୂତନ ସିଦ୍ଧାନ୍ତ ଓ ନୂତନ ସନ୍ଦେଶ ପ୍ରଚାର କରିବା ପାଇଁ ବାହାରି ପଡ଼ିଥିଲେ । ସେହିଦିନଠାରୁ ସେ ତାଙ୍କର ଅନୁଗାମୀମାନଙ୍କ ନିକଟରେ ବୁଦ୍ଧରୂପରେ ପରିଚିତ ହୋଇଥିଲେ । ଭଗବାନ ବୁଦ୍ଧ ବାରାଣସୀ ନିକଟବର୍ତ୍ତୀ ସାରନାଥଠାରେ ତାଙ୍କର ପ୍ରଥମ ଉପଦେଶ ପ୍ରଦାନ କରିଥିଲେ । ସେ ଦୀର୍ଘ ୪୫ ବର୍ଷ ଧରି ତାଙ୍କର ମହାନ୍ ଅମୃତମୟ ବାଣୀ ପ୍ରଚାର କରି ଏବଂ ଏକ ସୁସଂଗଠିତ ସଂଘ ପ୍ରତିଷ୍ଠା କରି

ଧରାବତରଣର ଉଦ୍ଦେଶ୍ୟ ପୂର୍ଣ୍ଣ କରିଥିଲେ । ଏହାପରେ ସେ ଅଶୀବର୍ଷ ବୟସରେ କୁଶୀନଗରଠାରେ ସେହି ବୈଶାଖ ମାସ ପୂର୍ଣ୍ଣମୀ ଦିନ ମହା-ପରିନିର୍ବାଣ ଗ୍ରହଣ କରିଥିଲେ । ଏହି ଦିବସଟି ତ୍ରିବାର ପବିତ୍ର ଦିବସ ରୂପେ ପାଳିତ ହୋଇଥାଏ । କାରଣ ଏହି ବୈଶାଖ ପୂର୍ଣ୍ଣମୀ ଦିନ ସେ ଜନ୍ମ ଗ୍ରହଣ କରିଥିଲେ ଏବଂ ଏହି ଦିନ ହିଁ ସେ ସିଦ୍ଧିପ୍ରାପ୍ତ ହୋଇଥିଲେ ।

'ମହାପରିନିବ୍‌ବାନ୍‌ସୁତ'ରେ କୁହାଯାଇଛି ଯେ ସେହି ସ୍ଥାନ, ଯେଉଁଠାରେ ଭଗବାନ ବୁଦ୍ଧ ଜନ୍ମ ଗ୍ରହଣ କରିଥିଲେ, ଅର୍ଥାତ୍ ଲୁମ୍ବିନୀ; ସେହି ସ୍ଥାନ, ଯେଉଁଠାରେ ସେ ସ୍ୱୟଂ ବୁଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ ଅର୍ଥାତ୍ ବୁଦ୍ଧଗୟା; ସେହି ସ୍ଥାନ, ଯେଉଁଠାରେ ସେ ଧମ୍ମଚକ୍କପବତ୍ତନସୁତ୍ତ (ପ୍ରଥମ ଉପଦେଶ) ପ୍ରଦାନ କରିଥିଲେ ଅର୍ଥାତ୍ ସାରନାଥ ଏବଂ ସେହି ସ୍ଥାନ ଯେଉଁଠାରେ ସେ 'ମହାପରିନିବ୍‌ବାନ୍' ପ୍ରାପ୍ତ ହୋଇଥିଲେ, ଅର୍ଥାତ୍ କୁଶୀନାରା; ଏସବୁ ସ୍ଥାନ ଅତି ପବିତ୍ର ବୋଲି ପରିଗଣିତ ହୁଏ । ଭଗବାନ ବୁଦ୍ଧ ହେଉଛନ୍ତି ହିନ୍ଦୁମାନଙ୍କର ଦଶ ଅବତାର ମଧ୍ୟରେ ଅନ୍ୟତମ । ମହାତ୍ମାଗାନ୍ଧୀ କହିଥିଲେ—'ବୁଦ୍ଧଙ୍କର ଉପଦେଶଗୁଡ଼ିକର ଅଧିକାଂଶ ଭାଗ ଆଜି ହିନ୍ଦୁମାନଙ୍କର ଧର୍ମ ବିଶ୍ୱାସର ଏକ ଅପରିହାର୍ଯ୍ୟ ଅଙ୍ଗ ହୋଇ ରହିଛି । ଗୌତମବୁଦ୍ଧ ହିନ୍ଦୁ ଧର୍ମରେ ଯେଉଁ ମହାନ୍ ସଂସ୍କାର ଆଣିଥିଲେ,ସେଥିରୁ ବିଚ୍ୟୁତ ହେବା ଆଜି ହିନ୍ଦୁ ଜଗତ ପକ୍ଷେ ଅସମ୍ଭବ ବୋଲି ମନେ ହୁଏ । ସେ ନିଜର ମହାନ୍ ତ୍ୟାଗ, ମହାନ୍ ବୈରାଗ୍ୟ ତଥା ଚରମ ପବିତ୍ରତା ଦ୍ୱାରା ହିନ୍ଦୁ ଧର୍ମ ଉପରେ ଏକ ଅଲିଭା ଛାପ ପକାଇ ଯାଇଛନ୍ତି । ତାଙ୍କର ମହାନ୍ ଉପଦେଶଗୁଡ଼ିକ ଯୋଗୁ ହିନ୍ଦୁ ଧର୍ମ, ଆଜି ତାଙ୍କ ନିକଟରେ ଚିରଋଣୀ ହୋଇ ରହିଛି । ହିନ୍ଦୁଧର୍ମର ସର୍ବୋତ୍କୃଷ୍ଟ ତତ୍ତ୍ୱମାନ ତାଙ୍କର ଉପଦେଶଗୁଡ଼ିକ ମଧ୍ୟରେ ରହିଛି । ବେଦନିହିତ ଯେଉଁସବୁ ତତ୍ତ୍ୱ ନିଷ୍ପ୍ରଭ ଅବସ୍ଥାରେ ରହିଥିଲା, ସେ ତାଙ୍କର ଅନେକ ଉପଦେଶ ଦ୍ୱାରା ତାହାକୁ ପୁନର୍ଜୀବିତ କରିଥିଲେ ।'

ଭଗବାନ ବୁଦ୍ଧ କେବଳ 'ଏସିଆର ଜ୍ୟୋତି' ନୁହଁନ୍ତି ବରଂ ସାରାଜଗତର ଜ୍ୟୋତି ରୂପେ ପୂଜା ପାଇ ଆସୁଛନ୍ତି । ମାନବଜାତିର ଆଧ୍ୟାତ୍ମିକ ଓ ସାଂସ୍କୃତିକ ଜାଗରଣ ପାଇଁ ତାଙ୍କର ଅବଦାନ ଅତୁଳନୀୟ ।

ଭଗବାନ ବୁଦ୍ଧଙ୍କର ଜୀବନାଦର୍ଶ ଓ ସେ ଦେଇ ଯାଇଥିବା ଉପଦେଶମାନ ସଂସାରରେ କୋଟି କୋଟି ଲୋକଙ୍କର ଜୀବନଚର୍ଯ୍ୟା ଓ ଚିନ୍ତନକୁ ପ୍ରଭାବିତ କରୁଛି । ପ୍ରେମ ଓ କରୁଣାର ମୂର୍ତ୍ତିମାନ ବିଗ୍ରହ ଭଗବାନ ବୁଦ୍ଧଙ୍କର କୃପା ଲାଭ କରି ମାନବଜାତି ଆଜି କୃତାର୍ଥ ହୋଇଛି । ତାଙ୍କର କୃପା ଲାଭ କରିବା ପାଇଁ ଆସନ୍ତୁ, ଆମେ ନିଜକୁ ଯଥାଯୋଗ୍ୟ କରି ଗଢ଼ିବା ଏବଂ ତାଙ୍କରି ବାଣୀକୁ ଅନୁସରଣ କରି ଆଦର୍ଶ ଜୀବନଯାପନ କରିବା ।



# ଭଗବାନ ବୁଦ୍ଧଙ୍କ ସମ୍ବନ୍ଧରେ ସ୍ୱାମୀ ବିବେକାନନ୍ଦଙ୍କ ଉକ୍ତି

ଆଜି ସେହି ମହାପୁରୁଷଙ୍କ ସମ୍ବନ୍ଧରେ ମୁଁ ସଂକ୍ଷେପରେ କହିବାକୁ ଯାଉଛି, ଯିଏ କି କର୍ମଯୋଗର ଉପଦେଶଗୁଡ଼ିକୁ ଯଥାର୍ଥ ବ୍ୟବହାର ଉପଯୋଗୀ କରିଥିଲେ । ସେ ହେଉଛନ୍ତି ଭଗବାନ ବୁଦ୍ଧ, ଜଣେ ଅଦ୍ୱିତୀୟ ପୁରୁଷ । ବୁଦ୍ଧଙ୍କ ଛଡ଼ା ସଂସାରକୁ ଅନ୍ୟ ଯେଉଁସବୁ ମହାପୁରୁଷ ଆସିଛନ୍ତି, ସେମାନେ ବାହ୍ୟକାରଣ ଦୃଷ୍ଟିରୁ ନିଷ୍କାମ କାର୍ଯ୍ୟର ପ୍ରେରଣା ଦେଇ ଯାଇଛନ୍ତି କିନ୍ତୁ ବୁଦ୍ଧ ହେଉଛନ୍ତି ଜଣେ ଅନନ୍ୟ କର୍ମଯୋଗୀ, ଜଣେ ଆଦର୍ଶ କର୍ମଯୋଗୀ, ଯିଏ କି ମାନବଜାତିର ଇତିହାସରେ ଜଣେ ମହାନ୍ ପୁରୁଷ ରୂପେ ଚିରକାଳ ପାଇଁ ଜାଜ୍ୱଲ୍ୟମାନ ହୋଇ ରହିଥିବେ । ସେ ହେଉଛନ୍ତି ଜଣେ ଅତୁଳନୀୟ ବ୍ୟକ୍ତି, ଯିଏ କି ହୃଦୟ ଓ ମନ ମଧ୍ୟରେ ସମନ୍ୱୟ ଆଣି ପାରିଥିଲେ । ତାଙ୍କ ପରି ଆତ୍ମଶକ୍ତିର ପ୍ରକାଶ ଘଟାଇଥିବା ଅନ୍ୟ କୌଣସି ମହାପୁରୁଷ ଏ ସଂସାରରେ ବିରଳ କହିଲେ ଚଳେ ।

'ଐତିହାସିକ ଦୃଷ୍ଟିରୁ ବୌଦ୍ଧଧର୍ମ ହେଉଛି ଏକ ଅତି ଗୁରୁତ୍ୱପୂର୍ଣ୍ଣ ଧର୍ମ, କିନ୍ତୁ ଦାର୍ଶନିକ ଦୃଷ୍ଟିରୁ ନୁହେଁ । କାରଣ ଏହା ହେଉଛି ସଂସାରରେ ଏକ ବୃହତ୍ତମ ଧାର୍ମିକ ଆନ୍ଦୋଳନ । ଏପରି ପ୍ରଚଣ୍ଡ ଆଧ୍ୟାତ୍ମିକ ଲହରୀ ଇତିପୂର୍ବରୁ ମାନବ ସମାଜରେ କେବେ ପରିଦୃଷ୍ଟ ହୋଇ ନ ଥିଲା ।'



# ଚାରି ଆର୍ଯ୍ୟ ସତ୍ୟ

୧. ଦୁଃଖ ରହିଛି ।

୨. ଦୁଃଖର କାରଣ ରହିଛି ।

୩. ଦୁଃଖର ନିଦାନ ରହିଛି ।

୪. ଦୁଃଖର ଅବସାନ ଘଟାଇବା ମାର୍ଗ ରହିଛି ।

# ପଞ୍ଚଶୀଳ ଧର୍ମାଦେଶ

୧. ହତ୍ୟା ନ କରିବାର ଧର୍ମାଦେଶ ଗ୍ରହଣ କର ।

୨. ଚୋରି ନ କରିବାର ଧର୍ମାଦେଶ ଗ୍ରହଣ କର ।

୩. ବ୍ୟଭିଚାରରୁ ବିରତ ରହିବାର ଧର୍ମାଦେଶ ଗ୍ରହଣ କର ।

୪. ଅସତ୍ୟ ନ କହିବାର ଧର୍ମାଦେଶ ଗ୍ରହଣ କର ।

୫. ମଦ୍ୟପାନ ନ କରିବାର ଧର୍ମାଦେଶ ଗ୍ରହଣ କର ।



# ଅଷ୍ଟାଙ୍ଗିକ ମାର୍ଗ

୧. ସମ୍ୟକ୍ ଦୃଷ୍ଟି (ଅନ୍ଧବିଶ୍ୱାସ ଓ ଭ୍ରମ ରହିତ)

୨. ସମ୍ୟକ୍ ସଂକଳ୍ପ (ଉଚ୍ଚ ଓ ବୁଦ୍ଧିଯୁକ୍ତ)

୩. ସମ୍ୟକ୍ ବାକ୍ (ନମ୍ର, ନିଷ୍କପଟ, ସତ୍ୟନିଷ୍ଠ ବଚନ)

୪. ସମ୍ୟକ୍ କର୍ମାନ୍ତ (ଶାନ୍ତିପୂର୍ଣ୍ଣ, ନିଷ୍ଠାପୂର୍ଣ୍ଣ, ପବିତ୍ର ଆଚରଣ)

୫. ସମ୍ୟକ୍ ଆଜୀବ (କୌଣସି ପ୍ରାଣୀକୁ ଆଘାତ ନ ଦେବା ଓ କାହାରି କ୍ଷତି ନ କରିବା)

୬. ସମ୍ୟକ୍ ପ୍ରଚେଷ୍ଟା (ଆତ୍ମ-ପ୍ରଶିକ୍ଷଣ ଓ ଆତ୍ମ-ନିଗ୍ରହ)

୭. ସମ୍ୟକ୍ ସ୍ମୃତି (ସକ୍ରିୟ ଓ ସଚେତନ ମନ)

୮. ସମ୍ୟକ୍ ସମାଧି (ଜୀବନର ଯଥାର୍ଥତା ପ୍ରତି ଗଭୀର ଧ୍ୟାନ)



# ଭଗବାନ ବୁଦ୍ଧଙ୍କ ଆଦେଶ

୧. ହତ୍ୟା କର ନାହିଁ ।
୨. ଚୋରି କର ନାହିଁ ।
୩. ବ୍ୟଭିଚାରରେ ଲିପ୍ତ ହୁଅ ନାହିଁ ।
୪. ମିଥ୍ୟା କୁହ ନାହିଁ ।
୫. କାହାରି କୁତ୍ସା ରଟନା କର ନାହିଁ ।
୬. କାହାରିକୁ କର୍କଶ ବଚନ କୁହ ନାହିଁ ।
୭. ବୃଥାଳାପ କର ନାହିଁ ।
୮. ଅନ୍ୟର ସମ୍ପତ୍ତି ପ୍ରତି ଲୋଭ ରଖ ନାହିଁ ।
୯. କାହାରି ପ୍ରତି ଘୃଣା ଭାବ ରଖ ନାହିଁ ।
୧୦. ନ୍ୟାୟସଂଗତ ବିଚାର କର ।



# ପୁଣ୍ୟକର୍ମର ଉପଦେଶ

୧. ସତ୍‌ପାତ୍ରରେ ଦାନ କର ।

୨. ନୈତିକତାର ନିୟମ ପାଳନ କର ।

୩. ଶୁଭ ବିଚାରର ଅଭ୍ୟାସ କର ଓ ବିକାଶ କର ।

୪. ଅନ୍ୟର ସେବାଯତ୍ନ କର ।

୫. ମାତାପିତା ଓ ଗୁରୁଜନମାନଙ୍କୁ ସମ୍ମାନ କର ଓ ସେମାନଙ୍କର ସେବା କର ।

୬. ନିଜ ପୁଣ୍ୟର ଅଂଶ ଅନ୍ୟକୁ ଦିଅ ।

୭. ଅନ୍ୟର ପୁଣ୍ୟ ଦାନକୁ ସ୍ୱୀକାର କର ।

୮. ନ୍ୟାୟପୂର୍ଣ୍ଣ ସିଦ୍ଧାନ୍ତ ଗ୍ରହଣ କର ।

୯. ନ୍ୟାୟପୂର୍ଣ୍ଣ ସିଦ୍ଧାନ୍ତ ପ୍ରଚାର କର ।

୧୦. ନିଜର ଦୋଷତ୍ରୁଟିକୁ ସଂଶୋଧନ କର ।



# ତିନୋଟି ସତର୍କବାଣୀ

୧. ତୁମେ କଅଣ ଏ ସଂସାରରେ କେଉଁଠି କେବେ ହେଲେ ଏପରି ଜଣେ ଅଶୀ, ନବେ କିମ୍ବା ଶହେ ବର୍ଷ ବୟସର ଜରାଜୀର୍ଣ୍ଣ ପୁରୁଷ ବା ସ୍ତ୍ରୀଲୋକକୁ ଦେଖି ନାହଁ କି, ଯାହାର ଶରୀର ତ୍ରିକୋଣ ମହୁଡ଼ମରା ଛପର ଚାଳ ପରି ନଇଁ ଯାଇଛି କିମ୍ବା ଶରୀର ଯାହାର ବକ୍ର ହୋଇଯାଇଛି, ଯିଏକି ହାତରେ ବାଡ଼ିଟିଏ ନ ଧରିଲେ ଚାଲି ପାରୁ ନାହିଁ କାରଣ ଚଳତ୍‌ଶକ୍ତି-ରହିତ, ଦୁର୍ବଳତା ଯୋଗୁଁ ଯାହାଙ୍କର ପାଦ ଏଠି ସେଠି ପଡୁଛି, ଯାହାଙ୍କର ଅଙ୍ଗସବୁ ଶିଥିଳ ହୋଇ ପଡିଲାଣି, ଯାହାଙ୍କର ଯୌବନ ଅନେକ ଦିନରୁ ବିଲୁପ୍ତ ହୋଇଯାଇଛି, ଯାହାଙ୍କର ପାଟିରୁ ଦାନ୍ତସବୁ ଝଡ଼ି ପଡ଼ିଲାଣି, ଯାହାଙ୍କର କେଶ ଧଳା ହୋଇଗଲାଣି କିମ୍ବା ମୁଣ୍ଡ ଚନ୍ଦା ହୋଇଗଲାଣି ଏବଂ ଯାହାଙ୍କର ଶରୀରର ଚର୍ମସବୁ କୁଞ୍ଚିତ ହୋଇଗଲାଣି ?

ଆଉ ତୁମେ ଯେ ଦିନେ ନା ଦିନେ ଠିକ୍ ଏହିପରି କ୍ଷୟ ପ୍ରାପ୍ତ ହେବ ଏବଂ ଏପରି ଅବସ୍ଥାରୁ କଦାପି ତ୍ରାହି ପାଇପାରିବ ନାହିଁ, ଏକଥା କଅଣ କେବେ ମନରେ ବିଚାର କରି ନାହଁ କି ? ଦେଖ, ତୁମକୁ ବି ଦିନେ ଏପରି ଅବସ୍ଥା ଭୋଗ କରିବାକୁ ପଡ଼ିପାରେ ।

୨. ତୁମେ କଅଣ ଏ ସଂସାରରେ କେବେ ଏପରି କୌଣସି ଉତ୍କଟ ବ୍ୟାଧିଗ୍ରସ୍ତ ପୁରୁଷ ବା ସ୍ତ୍ରୀଲୋକକୁ ଦେଖି ନାହଁ, ଯିଏ କି ନିଜେ ନିଜ ବିଷ୍ଠାରେ ଘାଣ୍ଟି ହୋଇ ଶଯ୍ୟାରେ ପଡ଼ିରହୁଛି ଏବଂ ଯାହାକୁ କି କେହି ଧରି ନ ଉଠାଇଲେ ସେ ନିଜ ଶକ୍ତିରେ ଉଠିପାରୁ ନାହିଁ ?

ଆଉ ତୁମେ ଯେ ଦିନେ ନା ଦିନେ ଏପରି ରୋଗାକ୍ରାନ୍ତ ହେବ ଏବଂ ଏହି ଅବସ୍ଥାରୁ କଦାପି ତ୍ରାହି ପାଇପାରିବ ନାହିଁ, ଏକଥା କଅଣ ଦିନେ ହେଲେ ମନରେ ବିଚାର କରି ନାହଁ କି ? ଦେଖ, ତୁମକୁ ବି ଦିନେ ଏହିପରି ଅବସ୍ଥା ଭୋଗ କରିବାକୁ ପଡ଼ିପାରେ ।

୩. ତୁମେ କଅଣ ଏ ସଂସାରରେ କେବେ ଏପରି କୌଣସି ପୁରୁଷ ବା ସ୍ତ୍ରୀଲୋକର ଶବକୁ ଦେଖି ନାହଁ, ଯାହାକି ମୃତ୍ୟୁର ଦୁଇ ତିନି ଦିନ ପରେ ଫୁଲିଯାଇ କଳା କିମ୍ବା ନୀଳ ହୋଇଯାଇଛି ଏବଂ ପଚିସଢ଼ିଯାଇଛି ? ଆଉ ତୁମକୁ ଯେ ଦିନେ ନା ଦିନେ ଏମିତି ମରିବାକୁ ହେବ ଏବଂ ଏପରି ଅବସ୍ଥାରୁ ତୁମେ ଯେ କଦାପି ତ୍ରାହି ପାଇପାରିବ ନାହିଁ, ଏକଥା କଅଣ କେବେ ମନରେ ବିଚାର କରି ନାହଁ କି ? ଦେଖ, ତୁମକୁ ବି ଦିନେ ଏହିପରି ଦଶା ଭୋଗିବାକୁ ପଡ଼ିପାରେ ।



# ସାରନାଥରେ ପ୍ରଥମ ଧର୍ମୋପଦେଶ

ପାଞ୍ଚଜଣ ଭିକ୍ଷୁଙ୍କୁ ସମ୍ବୋଧନ କରି ଭଗବାନ ବୁଦ୍ଧ କହିଥିଲେ:—

ତଥାଗତଙ୍କୁ ତାଙ୍କ ନାମ ଧରି ଡାକ ନାହିଁ, 'ମିତ୍ର' ବୋଲି ମଧ୍ୟ ସମ୍ବୋଧନ କର ନାହିଁ, କାରଣ ସେ ହେଉଛନ୍ତି ପବିତ୍ରାତ୍ମା ବୁଦ୍ଧ । ବୁଦ୍ଧ କରୁଣାପୂର୍ଣ୍ଣ ହୃଦୟରେ ସମସ୍ତ ପ୍ରାଣୀଙ୍କୁ ସମାନ ଦୃଷ୍ଟିରେ ଦେଖନ୍ତି । ତେଣୁ ସେମାନେ ତାଙ୍କୁ ପିତା ବୋଲି କହନ୍ତି । ପିତାଙ୍କ ପ୍ରତି ଅସମ୍ମାନ ପ୍ରଦର୍ଶନ କରିବା ଅନୁଚିତ । ତାଙ୍କୁ ଅବଜ୍ଞା କରିବା ହେଉଛି ପାପ ।

ତଥାଗତ ଆତ୍ମନିଗ୍ରହ ଦ୍ୱାରା ନିର୍ବାଣ ଚାହାନ୍ତି ନାହିଁ କିନ୍ତୁ ଏହି କାରଣରୁ ତୁମେ ଏହା ମଧ୍ୟ ଭାବିବା ଉଚିତ ନୁହେଁ ଯେ ସେ ସାଂସାରିକ ସୁଖରେ ମଗ୍ନ ରହନ୍ତି କିମ୍ବା ପ୍ରାଚୁର୍ଯ୍ୟ ମଧ୍ୟରେ ରହନ୍ତି । ତଥାଗତ 'ମଧ୍ୟମ ପନ୍ଥା' ଖୋଜି ପାଇଛନ୍ତି ।

ମନୁଷ୍ୟ ଯେପର୍ଯ୍ୟନ୍ତ ଭ୍ରମାତ୍ମକ ଚେତନାରୁ ମୁକ୍ତ ହୋଇ ନ ପାରିଛି, ସେପର୍ଯ୍ୟନ୍ତ ମାଛ-ମାଂସ ଖାଇବା ଛାଡ଼ି ଦେଇଥିଲେ କିମ୍ବା ନଗ୍ନ ଅବସ୍ଥାରେ ବୁଲୁଥିଲେ କିମ୍ବା ଲଣ୍ଡିତ ମସ୍ତକ ହୋଇ ରହିଥିଲେ କିମ୍ବା ମୁଣ୍ଡରେ ଜଟା ଧାରଣ କରିଥିଲେ କିମ୍ବା ବଲ୍‌କଳ ପିନ୍ଧିଥିଲେ କିମ୍ବା ଭସ୍ମ ବୋଳି ହୋଇଥିଲେ ମଧ୍ୟ କଦାପି ପବିତ୍ର ହୋଇପାରିବ ନାହିଁ ।

ଯେ ପର୍ଯ୍ୟନ୍ତ ବ୍ୟକ୍ତିର ଭ୍ରମ ନାଶ ହୋଇ ନାହିଁ, ସେ ଯେତେ ବେଦ ଅଧ୍ୟୟନ କରୁ କିମ୍ବା ପୁରୋହିତମାନଙ୍କୁ ଯେତେ ଦାନ ଦେଉ କିମ୍ବା ଯଜ୍ଞାନୁଷ୍ଠାନ ଦ୍ୱାରା ଦେବତାମାନଙ୍କୁ ଯେତେ ସନ୍ତୁଷ୍ଟ କରୁ କିମ୍ବା ଉତ୍ତାପ ବା ଶୀତ ସହ୍ୟ କରି ଆତ୍ମପୀଡ଼ନ ଦ୍ୱାରା ଯେତେ ତପ କରୁ କିମ୍ବା ଅମରତ୍ୱ ଲାଭ ପାଇଁ ଯେତେ ପ୍ରକାର କଷ୍ଟକର ବିଧିବିଧାନ ସମ୍ପନ୍ନ କରୁ ନା କାହିଁକି, ସେ କଦାପି ପବିତ୍ର ହୋଇପାରିବ ନାହିଁ ।

କେବଳ ମାଂସାହାର କଲେ ଯେ ମନୁଷ୍ୟ ଅପବିତ୍ର ହୋଇଯାଏ ତା ନୁହେଁ, ବରଂ କ୍ରୋଧ, ମଦ୍ୟପାନ, ଜିଦ୍‌ଖୋର ସ୍ୱଭାବ, ବ୍ୟଭିଚାର, ଛଳନା,

ଈର୍ଷା, ଆତ୍ମବଡ଼ିମା, ପରନିନ୍ଦା, ଔଦ୍ଧତ୍ୟ ଏବଂ ଅଶୁଭ ଚିନ୍ତା ହିଁ ମନୁଷ୍ୟକୁ ଅପବିତ୍ର କରି ଦେଇଥାଏ ।

ହେ ଭିକ୍ଷୁଗଣ ! ମୁଁ ତୁମକୁ 'ମଧ୍ୟମ-ପନ୍ଥାର' ଶିକ୍ଷା ପ୍ରଦାନ କରୁଛି, ଯାହାକି ଦୁଇଟିଯାକ ଅତିବାଦରୁ ରହିତ । ତପ ଆଚରଣ ପାଇଁ ଶରୀରକୁ ପୀଡ଼ା ଦେବା ଦ୍ୱାରା ଦୁର୍ବଳ ହୋଇ ପଡ଼ିଥିବା ବ୍ୟକ୍ତିର ମନରେ ଭ୍ରମ ଓ ରୁଗ୍ଣ ବିଚାର ଉତ୍ପନ୍ନ ହୋଇଥାଏ । ଆତ୍ମପୀଡ଼ନ ଦ୍ୱାରା ସାଂସାରିକ ଜ୍ଞାନ ମଧ୍ୟ ଲାଭ ହୋଇନଥାଏ । ତେବେ ଇନ୍ଦ୍ରିୟମାନଙ୍କ ଉପରେ ବିଜୟପ୍ରାପ୍ତି ହେବ ବା କିପରି ?

ଦୀପରେ ପାଣି ଭରିଦେଇ ଜଳାଇବାକୁ ଗଲେ କଅଣ ଅନ୍ଧକାର ଦୂର ହୋଇପାରିବ ? ଖତରା କାଠକୁ ଜାଳିଲେ କଅଣ ନିଆଁ ସୃଷ୍ଟି ହେବ ? ଏସବୁ ବୃଥା କାର୍ଯ୍ୟ ।

ଶରୀରକୁ ପୀଡ଼ା ଦେବା ହେଉଛି ଅନିଷ୍ଟକର କାର୍ଯ୍ୟ ଓ ବ୍ୟର୍ଥ କାର୍ଯ୍ୟ । ଏହାଦ୍ୱାରା କିଛି ଲାଭ ନାହିଁ । ଯଦି କୌଣସି ବ୍ୟକ୍ତି ନିଜର କାମାଗ୍ନିକୁ ନିର୍ବାପିତ କରିବାରେ ସଫଳ ହୋଇ ନ ପାରିଲା, ତା'ହେଲେ ଏପରି ତପ ଆଚରଣ କରି ଏବଂ ଏକ କଷ୍ଟଦାୟକ ଜୀବନ ବିତାଇ, ସେ ଦେହବୋଧରୁ କିପରି ମୁକ୍ତ ହୋଇପାରିବ ?

ଯେ ପର୍ଯ୍ୟନ୍ତ ମନରେ ଅହଂ ଭାବ ରହିଥିବ, ଯେ ପର୍ଯ୍ୟନ୍ତ ଇହଲୋକ ବା ପରଲୋକରେ ସୁଖ ଭୋଗର ବାସନା ମନରେ ବସାବାନ୍ଧି ରହିଥିବ, ସେ ପର୍ଯ୍ୟନ୍ତ ଶରୀରକୁ ପୀଡ଼ା ଦେଇ ତପ କରିବା ବୃଥା । କିନ୍ତୁ ଯାହାଙ୍କର ଅହଂଭାବ ନଷ୍ଟ ହୋଇଯାଇଛି, ସେ କାମନାବାସନାରୁ ମୁକ୍ତ ବୋଲି ଜାଣିବାକୁ ହେବ । ସେହି ବ୍ୟକ୍ତି ସାଂସାରିକ ସୁଖ କିମ୍ବା ସ୍ୱର୍ଗଲୋକକୁ ଯାଇ ସୁଖ ଭୋଗ କରିବା କାମନାର ଦାସ ନୁହନ୍ତି । ତାଙ୍କର ଦୈନନ୍ଦିନ ସ୍ୱାଭାବିକ ଆବଶ୍ୟକତା ପୂର୍ତ୍ତି ଦ୍ୱାରା ସେ ଅପବିତ୍ର ହୋଇ ନ ଥାନ୍ତି । ଶରୀରର ଆବଶ୍ୟକତା ଅନୁଯାୟୀ ସେ ସ୍ୱଚ୍ଛନ୍ଦରେ ଖାଇପିଇ ରହିପାରନ୍ତି ।

ପଦ୍ମଫୁଲ ଜଳ ମଧ୍ୟରେ ରହିଥିଲେ ମଧ୍ୟ, ଏହାର ପାଖୁଡ଼ାକୁ ଜଳ ଆର୍ଦ୍ର କରିପାରେ ନାହିଁ । ଠିକ୍ ଏହାର ବିପରୀତ ଅବସ୍ଥା, ମନୁଷ୍ୟ ଇନ୍ଦ୍ରିୟମାନଙ୍କର ଦାସତ୍ୱରୁ ନିଜକୁ ମୁକ୍ତ କରି ନ ପାରିବା ଯୋଗୁଁ ହୀନବୀର୍ଯ୍ୟ ହୋଇପଡ଼ିଥାଏ । ଇନ୍ଦ୍ରିୟ ସଂଯମ କରି ନ ପାରି ମନୁଷ୍ୟ ଆବେଗ ଦ୍ୱାରା ଚାଳିତ ହୋଇ ସୁଖଭୋଗ କରିବାକୁ ଯାଇ ଶେଷରେ ନିଜର ପତନ ଘଟାଇଥାଏ ।

ଜୀବନର ଅନିବାର୍ଯ୍ୟ ଆବଶ୍ୟକତା ପୂରଣ କରିବା ପାପ ନୁହେଁ । ଶରୀରକୁ ସୁସ୍ଥ ସବଳ ରଖିବା ହେଉଛି ମନୁଷ୍ୟର କର୍ତ୍ତବ୍ୟ, ଅନ୍ୟଥା ଜ୍ଞାନର ଦୀପକୁ ଜଳାଇ ରଖି ମନକୁ ଶକ୍ତ ଓ ଶୁଦ୍ଧ ରଖିବା ସମ୍ଭବପର ହେବ ନାହିଁ ।

ହେ ଭିକ୍ଷୁଗଣ, ଏସବୁ ହେଉଛି 'ମଧ୍ୟମ ପନ୍ଥା', ଯାହାକି ଦୁଇ ଚରମ ଅବସ୍ଥାଠାରୁ ଭିନ୍ନ ଅଟେ ।

ତଥାଗତ ଅତ୍ୟନ୍ତ ସ୍ନେହପୂର୍ବକ, ଏହିପରି ଭାବରେ ତାଙ୍କ ଶିଷ୍ୟମାନଙ୍କ ସହିତ କଥାବାର୍ତ୍ତା କରିଥିଲେ । ସେ କରୁଣା ପ୍ରଦର୍ଶନ କରି ସେମାନଙ୍କର ଦୋଷତ୍ରୁଟିଗୁଡ଼ିକୁ ଦୂର କରି ଦେଇଥିଲେ । ଶିଷ୍ୟମାନଙ୍କର ହୃଦୟରେ ଜମାଟ ବାନ୍ଧି ରହିଥିବା ଦୋଷ ଦୁର୍ବଳତାଗୁଡ଼ିକର ହିମଶିଳା ପ୍ରଭୁଙ୍କର ପ୍ରେରଣାଦାୟକ ଉପଦେଶାବଳୀର ଉତ୍ତାପ ଦ୍ୱାରା ବିଗଳିତ ହୋଇଯାଇଥିଲା ।



# ଧର୍ମଚକ୍ର-ପ୍ରବର୍ତ୍ତନ

ଭଗବାନ ତଥାଗତ ସାରନାଥ ଠାରେ ମହତ୍ତମ ଧର୍ମଚକ୍ର ପ୍ରବର୍ତ୍ତନ କରିଥିଲେ । ସେ ପାଞ୍ଚଜଣ ଭିକ୍ଷୁଙ୍କ ସମକ୍ଷରେ ସେମାନଙ୍କ ପାଇଁ ଅମରତ୍ୱର ଦ୍ୱାର ଉନ୍ମୁକ୍ତ କରି ତଥା ନିର୍ବାଣର ଆନନ୍ଦ ପ୍ରଦର୍ଶିତ କରି ଉପଦେଶ ଦେବାକୁ ଆରମ୍ଭ କରିଥିଲେ । ଭଗବାନ ଯେତେବେଳେ ତାଙ୍କର ପ୍ରବଚନ ଆରମ୍ଭ କଲେ, ସେତେବେଳେ ସମଗ୍ର ବିଶ୍ୱ ଆନନ୍ଦରେ ପୁଲକିତ ହୋଇଉଠିଥିଲା ।

ଭଗବାନ ବୁଦ୍ଧ କହିଲେ–

ବିଶୁଦ୍ଧ ଆଚରଣର ନିୟମ ସବୁ ହେଉଛି, ଗୋଟିଏ ଚକ୍ରର ଅଖଗୁଡ଼ିକ ପରି । ନ୍ୟାୟ ହେଉଛି ଅରଗୁଡ଼ିକର ଦୈର୍ଘ୍ୟ ସହିତ ସମାନ । ପ୍ରଜ୍ଞା ହେଉଛି ସେହି ଧର୍ମଚକ୍ରର ହାଲ (ଲୌହବଳୟ) । ବିନୟ ଓ ଚିନ୍ତନଶୀଳତା ହେଉଛି ଚକ୍ରର ନାଭିଦେଶ ଯେଉଁଥିରେ କି ସତ୍ୟରୂପୀ ରଥର ଅଟଳ ଅଖ ଖଞ୍ଜା ହୋଇରହିଛି ।

ଯେଉଁ ବ୍ୟକ୍ତି ଦୁଃଖର ଅସ୍ତିତ୍ୱ, ଦୁଃଖର କାରଣ, ଦୁଃଖର ନିଦାନ ଓ ଦୁଃଖର ନିବାରଣ ବିଷୟ ନିଜର ପ୍ରଜ୍ଞା ଦ୍ୱାରା ଅବହିତ ହୋଇଥାନ୍ତି, ସେ ଚାରିଟି ମହାନ୍ ଆର୍ଯ୍ୟସତ୍ୟକୁ ହୃଦୟଙ୍ଗମ କରିପାରିଥାନ୍ତି । ଏପରି ବ୍ୟକ୍ତି ସତ୍ୟପଥରେ ହିଁ ବିଚରଣ କରିଥାନ୍ତି ।

ସେ କହିଲେ–ସମ୍ୟକ୍ ଦୃଷ୍ଟି ସେହି ବ୍ୟକ୍ତିଙ୍କର ପଥକୁ ଆଲୋକିତ କରିବାରେ ମଶାଲ ସଦୃଶ କାର୍ଯ୍ୟ କରିଥାଏ । ସମ୍ୟକ୍ ସଂକଳ୍ପ ତାଙ୍କର ପଥ ପ୍ରଦର୍ଶକ ହୋଇଥାଏ । ସମ୍ୟକ୍ ବାକ୍, ଯାତ୍ରାପଥରେ ରହିବା ପାଇଁ ତାଙ୍କର ଆଶ୍ରୟସ୍ଥଳ ହୋଇଥାଏ । ସମ୍ୟକ୍ କର୍ମାନ୍ତ ଯୋଗୁ ତାଙ୍କର ପଦଗତି ଅଗ୍ରଗାମୀ ହୋଇଥାଏ । ସମ୍ୟକ୍ ଆଜୀବ ବା ଜୀବିକା ଉପାର୍ଜନର ବିଧି ତାଙ୍କର ମନୋରଞ୍ଜନ କରିଥାଏ । ସମ୍ୟକ୍ ପ୍ରଚେଷ୍ଟା ତାଙ୍କର ପଦକ୍ଷେପ ହୋଇ ରହିଥାଏ । ସମ୍ୟକ୍ ସ୍ମୃତି ତାଙ୍କର ଶ୍ୱାସ ସ୍ୱରୂପ ହୋଇଥାଏ ଏବଂ ସମ୍ୟକ୍ ସମାଧି ତାଙ୍କର ଶାନ୍ତି ଓ ଆନନ୍ଦର ଉତ୍ସ ହୋଇ ରହିଥାଏ ।

ଏହାପରେ ଭଗବାନ ପୁଣି ବ୍ୟାଖ୍ୟା କରିବାକୁ ଲାଗିଲେ –

ଯାହାକିଛି ଉତ୍ପନ୍ନ ହୋଇଥାଏ, ତାହା ପୁଣି ଲୀନ ହୋଇଥାଏ । ଅହଂଭାବ ଦ୍ୱାରା ଭାବିତ ହୋଇ ଯାହା କିଛି କରାଯାଏ ସେସବୁ ନିଷ୍ଫଳ । ଅହଂକାର ହେଉଛି ମୃଗତୃଷ୍ଣା ପରି, ଏହା ସହିତ ସମ୍ବନ୍ଧ ଥିବା ସବୁ ମନସ୍ତାପ କ୍ଷଣିକ ଅଟେ । କାରଣ ସ୍ୱପ୍ନ ଭାଙ୍ଗିଗଲେ ସବୁ ଦୃଶ୍ୟ ଯେପରି ବିଲୀନ ହୋଇ ଯାଇଥାଏ, ଏହା ସେହିପରି ଉଭେଇ ଯାଇଥାଏ ।

ଯାହାଙ୍କ ମନରେ ଜାଗରଣ ଆସିଛି, ତାଙ୍କର ଆଉ ଭୟ କଅଣ ? ସେ ତ ମୁକ୍ତ, ସେ ତ ବୁଦ୍ଧ । ସେ ତାଙ୍କର ସମସ୍ତ ଚିନ୍ତା, ସମସ୍ତ ଆଶା-ଆକାଙ୍‌କ୍ଷା ଓ ସମସ୍ତ ଦୁଃଖର ଅସାରତ୍ୱ ବୁଝି ପାରିଥାନ୍ତି ।

ସେହି ବ୍ୟକ୍ତି ହେଉଛନ୍ତି ସୁଖୀ, ଯାହାଙ୍କ ମନରେ କୌଣସି ସ୍ୱାର୍ଥପର ଭାବନା ନ ଥାଏ । ସେହି ବ୍ୟକ୍ତି ହେଉଛନ୍ତି ସୁଖୀ, ଯାହାଙ୍କ ମନରେ ସର୍ବଦା ଶାନ୍ତି ବିରାଜମାନ କରୁଥାଏ । ସେହି ବ୍ୟକ୍ତି ହେଉଛନ୍ତି ସୁଖୀ ଯିଏ ସତ୍ୟକୁ ଉପଲବ୍ଧି କରିପାରିଛନ୍ତି ।

ସତ୍ୟ ହିଁ ମହାନ୍ ଓ ମଧୁର, ସତ୍ୟ ହିଁ ତୁମକୁ ସମସ୍ତ ଅମଙ୍ଗଳରୁ ମୁକ୍ତ କରିଦେଇପାରେ । ସତ୍ୟ ବିନା ଏ ସଂସାରରେ ଅନ୍ୟ କୌଣସି ମୁକ୍ତିର ପଥ ନାହିଁ । ତେଣୁ ସତ୍ୟ ଉପରେ ଆସ୍ଥା ରଖ । ସତ୍ୟ କଅଣ, ତାହା ବୋଧଗମ୍ୟ ହେଉ ବା ନ ହେଉ, ଏହାର ମାଧୁର୍ଯ୍ୟ ତୁମର ହୃଦୟଗ୍ରାହୀ ହେଉ ବା ନ ହେଉ, ତୁମେ ପ୍ରଥମେ ପ୍ରଥମେ ଏଥିରୁ ପଛଘୁଞ୍ଚା ଦେଉଥିଲେ ମଧ୍ୟ, ସତ୍ୟକୁ ଛାଡ଼ ନାହିଁ, ସତ୍ୟକୁ ଦୃଢ଼ ଭାବରେ ଧରିଥାଅ, ସତ୍ୟ ଉପରେ ଆସ୍ଥା ରଖ । ସତ୍ୟ ହିଁ ସର୍ବୋତ୍କୃଷ୍ଟ ତତ୍ତ୍ୱ । ଏହାକୁ ଜୀବନରେ ରୂପାୟିତ କର । କାରଣ ସତ୍ୟ ହିଁ ଅମରତ୍ୱ ପ୍ରଦାନ କରିଥାଏ । ସତ୍ୟ ହେଉଛି ଚିରନ୍ତନ, ଶାଶ୍ୱତ ।

ଜଣେ ବ୍ୟକ୍ତି ସତ୍ୟାନୁସରଣ ପଥରେ ଏକାକୀ ରହିଥିଲେ ମନର ଦୁର୍ବଳତା ଯୋଗୁ ପଥଭ୍ରଷ୍ଟ ହୋଇଯିବାର ଆଶଙ୍କା ରହିଛି । ତେଣୁ ସମସ୍ତେ ଏକତ୍ରୀତ ହୋଇ ଜଣେ ଅନ୍ୟ ଜଣକୁ ସାହାଯ୍ୟ କରି ସତ୍ୟ ପଥରେ ଅଗ୍ରସର ହୁଅ ।

ତୁମେ ସବୁ ପରସ୍ପର ଭାଇ ଭାଇ ପରି ସମ୍ବନ୍ଧ ରଖି, ପ୍ରେମ ଓ ପବିତ୍ରତା ସହକାରେ ସତ୍ୟପଥରେ ଆଗେଇ ଚାଲ । ସଂସାରର କୋଣେ କୋଣେ ସତ୍ୟ ଓ ସତ୍‌ସିଦ୍ଧାନ୍ତର ପ୍ରଚାର କର, ଯାହା ଫଳରେ କି ସମସ୍ତ ପ୍ରାଣୀ ଧର୍ମରାଜ୍ୟର ନାଗରିକ ହୋଇପାରିବେ । ଜୀବନର ସମସ୍ତ ଦୁଃଖ ଯନ୍ତ୍ରଣାରୁ ତ୍ରାହି ପାଇବା ପାଇଁ ସତ୍ୟନିଷ୍ଠ ପବିତ୍ର ଜୀବନଯାପନ କର ।



# କରୁଣା

ତଥାଗତ କହିଲେ—ମୁଁ କାହାରିଠାରୁ କୌଣସି ପ୍ରତିଦାନ ପାଇବାକୁ ଆଶା ରଖି ନାହିଁ କିମ୍ବା ସ୍ୱର୍ଗ ରାଜ୍ୟରେ ଜନ୍ମ ହେବାକୁ ବି ଚାହେଁ ନାହିଁ । ମୁଁ ତ ମନୁଷ୍ୟ ଜାତିର କଲ୍ୟାଣ କାମନା କରେ । ମୁଁ ତ ପଥଭ୍ରଷ୍ଟ ଲୋକମାନଙ୍କୁ ଠିକ୍ ବାଟକୁ ଫେରାଇ ଆଣିବାକୁ ଚାହେଁ । ଯେଉଁମାନେ ଭ୍ରାନ୍ତ ଚେତନାର ବଶବର୍ତ୍ତୀ ହୋଇ ରହିଛନ୍ତି, ସେମାନଙ୍କର ହୃଦୟର ଅନ୍ଧକାର ଦୂର କରିବାକୁ, ଆଉ ସଂସାରରୁ ସମସ୍ତ ଦୁଃଖ ଯନ୍ତ୍ରଣା ନିଶ୍ଚିହ୍ନ କରିଦେବାକୁ ମୁଁ ଚାହେଁ ।

ବିଶ୍ୱର ହିତ ସାଧନ କରିବା ହେଉଛି ମୋର ଏକମାତ୍ର ଲକ୍ଷ୍ୟ । ମୋ ନିଜର କଲ୍ୟାଣ ପାଇଁ ଏହା ଉଦ୍ଦିଷ୍ଟ ନୁହେଁ । ପ୍ରାଣୀ ମାତ୍ରକେ କିପରି ଆନନ୍ଦରେ ଓ ସୁଖ ଶାନ୍ତିରେ ରହିବେ ଏହା ହିଁ ମୋର ଅଭିଳାଷ, ଏହା ହିଁ ମୋର ପ୍ରେମର ଉତ୍ସ ।

ତୁମର କଷ୍ଟର କାରଣ ଯାହାକିଛି ହୋଇଥାଉ ନା କାହିଁକି, ତୁମେ ଅପରକୁ କୌଣସି ପ୍ରକାର ଆଘାତ ଦିଅ ନାହିଁ ।

ଯେଉଁ ବ୍ୟକ୍ତି ପ୍ରାଣୀମାନଙ୍କୁ କଷ୍ଟ ଦିଅନ୍ତି ବା ସେମାନଙ୍କର ଅନିଷ୍ଟ କରନ୍ତି ଏବଂ ଯାହାଙ୍କ ମନରେ କୌଣସି ପ୍ରାଣୀ ପ୍ରତି ସହାନୁଭୂତି ନ ଥାଏ, ତାଙ୍କୁ ଜାତିରୁ ବାସନ୍ଦ କରିଦିଅ । ସମସ୍ତ ପ୍ରାଣୀଙ୍କର କଲ୍ୟାଣ ସାଧନ ହେଉଛି ପ୍ରକୃତ ଧର୍ମ । ତେଣୁ ସମସ୍ତ ପ୍ରାଣୀଙ୍କ ପ୍ରତି ହୃଦୟରେ ଅସରନ୍ତି କରୁଣା ରଖ ।

ପ୍ରକୃତ ଧର୍ମର ଲକ୍ଷଣ ହେଉଛି—ସଦିଚ୍ଛା, ପ୍ରେମ, ସତ୍ୟନିଷ୍ଠା, ପବିତ୍ରତା, ଉଦାରତା ଓ ଦୟା । ସବୁ ପ୍ରାଣୀ ଆନନ୍ଦ ଚାହାନ୍ତି । ତେଣୁ ସମସ୍ତଙ୍କ ପ୍ରତି କରୁଣା ପ୍ରଦର୍ଶନ କର । କାହାରି ପ୍ରତି ଘୃଣା ଭାବ ରଖ ନାହିଁ । ସଂସାରରେ ଘୃଣାକୁ ଘୃଣା ଦ୍ୱାରା ଦୂର କରାଯାଇପାରିବ ନାହିଁ । କେବଳ ପ୍ରେମ ଦ୍ୱାରା ହିଁ ଏହାକୁ ନିରୋଧ କରାଯାଇପାରିବ । ଏହା ହିଁ ହେଉଛି ସନାତନ ନିୟମ ।

ଧୈର୍ଯ୍ୟ ଏବଂ ସହନଶୀଳତା ହେଉଛି ସବୁଠାରୁ ବଡ଼ ତପସ୍ୟା । ବୁଦ୍ଧ କହନ୍ତି – ନିର୍ବାଣ ହେଉଛି ସର୍ବୋତ୍ତମ । ଯେଉଁ ବ୍ୟକ୍ତି ଅନ୍ୟକୁ କଷ୍ଟ ଦିଏ, ସେ ବୈରାଗୀ ପଦବାଚ୍ୟ ନୁହେଁ ଏବଂ ଯେଉଁ ବ୍ୟକ୍ତି ଅନ୍ୟକୁ ପୀଡ଼ା ଦିଏ, ସେ ତପସ୍ୱୀ ପଦବାଚ୍ୟ ନୁହେଁ । ଯେଉଁ ବ୍ୟକ୍ତି ଅନ୍ୟକୁ ପୀଡ଼ା ଦେଇ ନିଜେ ସୁଖୀ ହେବାକୁ ଚାହେଁ, ସେ ହେଉଛି ଜଣେ ଘୃଣ୍ୟ ବ୍ୟକ୍ତି, କାରଣ ସେ ନିଜେ ନିଜକୁ ଘୃଣାର ଫାଶରେ ଛନ୍ଦି ଦେଇଥାଏ ।

ସମଗ୍ର ସଂସାର ପ୍ରତି ତୁମ ମନରେ ସଦିଚ୍ଛା ଭାବ ବିକଶିତ ହେଉ । ଏପରି ଏକ ବନ୍ଧୁତ୍ୱପୂର୍ଣ୍ଣ ମନ ବିକଶିତ ହେଉ, ଯାହା ଈର୍ଷା ଓ ଘୃଣାର ଊର୍ଦ୍ଧ୍ୱରେ ରହି ଚତୁର୍ଦ୍ଦିଗକୁ ପରିବ୍ୟାପ୍ତ ହେବ ।

ମାତା ଯେପରି ନିଜର ଜୀବନକୁ ଜଳାଞ୍ଜଳି ଦେଇ ତାର ଏକମାତ୍ର ପୁତ୍ରକୁ ରକ୍ଷା କରିଥାଏ, ସେହିପରି ଯେଉଁ ବ୍ୟକ୍ତି ସତ୍ୟକୁ ହୃଦ୍‌ବୋଧ କରିଛନ୍ତି, ସେ ନିଜର ସମସ୍ତ ଶକ୍ତି ଖଟାଇ ସମସ୍ତଙ୍କ ପ୍ରତି ସଦିଚ୍ଛାର ବିକାଶ ଘଟାଇବା ଉଚିତ ।

ଜଣେ ପରୋପକାରୀ ବ୍ୟକ୍ତିଙ୍କୁ ସମସ୍ତେ ଭଲ ପାଇଥାନ୍ତି ଏବଂ ତାଙ୍କର ସମସ୍ତଙ୍କ ପ୍ରତି ରହିଥିବା ବନ୍ଧୁତାକୁ ପ୍ରଶଂସା କରିଥାନ୍ତି । ମୃତ୍ୟୁ କାଳରେ ଏହି ବ୍ୟକ୍ତିଙ୍କ ହୃଦୟ ଆନନ୍ଦରେ ପରିପୂର୍ଣ୍ଣ ହୋଇ ରହିଥାଏ କାରଣ ତାଙ୍କଠାରେ କୌଣସି ପ୍ରକାର ପ୍ରାୟଶ୍ଚିତ୍ତର ଭାବନା ନ ଥାଏ । ସେ ତାଙ୍କର ସତ୍‌କର୍ମ ପାଇଁ ସଦ୍ୟ ପ୍ରସ୍ଫୁଟିତ ସୁବାସିତ ଫୁଲ ଓ ପରିପକ୍ୱ ଫଳ ପ୍ରାପ୍ତ ହୋଇଥାନ୍ତି ।

ଏହି ତତ୍ତ୍ୱଟିକୁ ବୁଝିବା କଷ୍ଟକର ଯେ ନିଜର ଖାଦ୍ୟକୁ ଅନ୍ୟକୁ ଦେଇଦେବା ଦ୍ୱାରା ଆମେ କାହିଁକି ଅଧିକ ଶକ୍ତି ପ୍ରାପ୍ତ ହୋଇଥାଉ ; ନିଜର ବସ୍ତ୍ରକୁ ଅନ୍ୟକୁ ଦେଇଦେବା ଦ୍ୱାରା ଆମେ କାହିଁକି ଅଧିକ ସୌନ୍ଦର୍ଯ୍ୟ ପ୍ରାପ୍ତ ହୋଇଥାଉ ଏବଂ ପବିତ୍ରତା ଓ ସତ୍ୟର ପ୍ରତିଷ୍ଠାନ ସ୍ଥାପନ କରିବା ଦ୍ୱାରା ଆମେ କାହିଁକି ସ୍ୱର୍ଗୀୟ ସମ୍ପଦର ଅଧିକାରୀ ହୋଇଥାଉ ।

ଜଣେ ବୀର ଯୋଦ୍ଧା ରଣକ୍ଷେତ୍ରକୁ ଯିବାବେଳେ ତାର ଶକ୍ତି ଯେଉଁ ପ୍ରକାର ହୋଇଥାଏ, ସେହି ପ୍ରକାର କ୍ଷମତା ଜଣେ ଦାତାଙ୍କଠାରେ

ହିଁ ଦେଖିବାକୁ ମିଳିଥାଏ, କାରଣ ସ୍ନେହ ଓ କରୁଣାରେ ପରିପୂର୍ଣ୍ଣ ହୋଇ ଶ୍ରଦ୍ଧାପୂର୍ବକ ସେ ଦାନ କରିଥାନ୍ତି । ତାଙ୍କଠାରେ ଘୃଣା, ଈର୍ଷା ଓ କ୍ରୋଧ ପ୍ରଭୃତି ଦୁର୍ଗୁଣ ଲେଶମାତ୍ର ପରିଲକ୍ଷିତ ହୁଏ ନାହିଁ ।

ଜଣେ ପରୋପକାରୀ ଦାନୀ ବ୍ୟକ୍ତିଙ୍କ ପାଇଁ ମୁକ୍ତିର ଦ୍ୱାର ସର୍ବଦା ଉନ୍ମୁକ୍ତ ରହିଥାଏ । ସେ ହେଉଛନ୍ତି ସେହିପରି ଜଣେ ବ୍ୟକ୍ତି, ଯେ କି ରୋପଣ କରିଥିବା ଗୋଟିଏ ଚାରା ଏକ ବିରାଟ ଦ୍ରୁମରେ ପରିଣତ ହୋଇ ଭବିଷ୍ୟତରେ ଛାୟା, ଫୁଲ ଓ ଫଳ ପ୍ରଦାନ କରିଥାଏ । ପରର ଉପକାର ଦ୍ୱାରା ଏହି ପ୍ରକାର ଫଳ ମିଳିଥାଏ । ଜଣେ ଅଭାବଗ୍ରସ୍ତ ଲୋକକୁ ସାହାଯ୍ୟ କରିବାରେ ଠିକ୍ ଏହିପ୍ରକାର ଆନନ୍ଦ ମିଳିଥାଏ । ଏହି ପ୍ରକାରେ ନିର୍ବାଣ ମଧ୍ୟ ପ୍ରାପ୍ତ ହୋଇଥାଏ ।

ତୁମେ ତୁମର ହଜିଥିବା ପୁତ୍ରକୁ ଫେରିପାଇଲେ ଯେଉଁପ୍ରକାର ତୀବ୍ରତା ସହକାରେ ତାକୁ ଭଲ ପାଇଥାଅ, ଠିକ୍ ସେହିପରି ଭାବରେ ତୁମର ବନ୍ଧୁମାନଙ୍କୁ ମଧ୍ୟ ଭଲପାଅ । ତା'ହେଲେ ତୁମେ ସିଦ୍ଧାର୍ଥଙ୍କ ଅପେକ୍ଷା ଅଧିକ ମହାନ୍ ବ୍ୟକ୍ତିଙ୍କୁ ପୁତ୍ରରୂପେ ପାଇବ । ତୁମେ ସତ୍ୟର ଉପଦେଷ୍ଟା ଓ ଧର୍ମର ପ୍ରଚାରକ ବୁଦ୍ଧଙ୍କୁ ପାଇପାରିବ ଏବଂ ନିର୍ବାଣର ପ୍ରଶାନ୍ତି ତୁମର ହୃଦୟରେ ଭରପୂର ହୋଇ ରହିବ ।

ନିରନ୍ତର ଦୟାର୍ଦ୍ର ହୋଇ କର୍ମ କଲେ ତୁମେ ଅମରତ୍ୱ ପ୍ରାପ୍ତ ହେବ । କରୁଣା ଓ ପରୋପକାର ଦ୍ୱାରା ତୁମେ ପୂର୍ଣ୍ଣତା ପ୍ରାପ୍ତ ହେବ ।

ସମସ୍ତଙ୍କ ପ୍ରତି ପ୍ରେମପୂର୍ଣ୍ଣ ହୃଦୟ ହେଉଛି ସବୁଠାରୁ ବଡ଼ ଆବଶ୍ୟକତା ।



# ମନନ, ଧ୍ୟାନ ଓ ଋଦ୍ଧି

ଶିଷ୍ୟ କହିଲେ, ହେ ପ୍ରଭୁ ମୋତେ ମନନର ଉପଦେଶ ଦିଅନ୍ତୁ, ଯେପରି ମୁଁ ନିଜକୁ ସେଥିରେ ଲଗାଇ ପାରିବି ଓ ମୋ ମନ ପବିତ୍ର ଭୂମିର ସ୍ୱର୍ଗଲୋକରେ ପ୍ରବେଶ କରିବ ।

ଉତ୍ତରରେ ଭଗବାନ ବୁଦ୍ଧ ପାଞ୍ଚ ପ୍ରକାର ମନନର ଉପଦେଶ ପ୍ରଦାନ କରିଥିଲେ—

ପ୍ରଥମ ମନନ ହେଉଛି ପ୍ରେମର ମନନ, ଯେଉଁଥିରେ ତୁମେ ସମସ୍ତଙ୍କର ସମୃଦ୍ଧି ଓ କଲ୍ୟାଣ, ଏପରିକି ତୁମ ଶତ୍ରୁମାନଙ୍କର ମଧ୍ୟ ସୁଖ ସମୃଦ୍ଧି କାମନା କରିପାରିବ ।

ଦ୍ୱିତୀୟ ମନନ ହେଉଛି କରୁଣାର ମନନ, ଯେଉଁଥିରେ ସମସ୍ତ ପ୍ରାଣୀଙ୍କର ଦୁଃଖକଷ୍ଟକୁ ନିଜର ହୃଦୟରେ କଳ୍ପନା ଓ ଅନୁଭବ କରିପାରିବ ଏବଂ ସେମାନଙ୍କ ସହିତ ଏକାତ୍ମ ହୋଇ କରୁଣାରେ ବିଗଳିତ ହୋଇଯିବ ।

ତୃତୀୟ ମନନ ହେଉଛି ଆନନ୍ଦର ମନନ, ଯେଉଁଥିରେ ତୁମେ ଅନ୍ୟର ସମୃଦ୍ଧି କାମନା କରି ଅନ୍ୟର ଆନନ୍ଦରେ ନିଜେ ଆନନ୍ଦିତ ହୋଇପାରିବ ।

ଚତୁର୍ଥ ମନନ ହେଉଛି ଅପବିତ୍ରତାର ମନନ, ଯେଉଁ ମନନରେ ଦୁର୍ନୀତିର ବିଷମୟ ପରିଣତି ତଥା ପାପକାର୍ଯ୍ୟ ଓ ରୋଗର ପ୍ରଭାବ ସମ୍ପର୍କରେ ବିଚାର କରିପାରିବ । କ୍ଷଣିକ ସୁଖ-ଭୋଗ ଯେ କେତେ ତୁଚ୍ଛ ଏବଂ ଏହାର ପର ମୁହୂର୍ତ୍ତରେ ଯେ କିପରି ମର୍ମନ୍ତୁଦ ଯନ୍ତ୍ରଣା ଭୋଗିବାକୁ ହୁଏ, ତାହା ତୁମେ ବିଚାର କରିପାରିବ ।

ପଞ୍ଚମ ମନନ ହେଉଛି ପ୍ରଶାନ୍ତିର ମନନ, ଯାହା ଫଳରେ କି ତୁମେ ପ୍ରେମ ଓ ଘୃଣା ଏବଂ ଧନର ପ୍ରାଚୁର୍ଯ୍ୟ ଓ ଉତ୍କଟ ଦାରିଦ୍ର୍ୟର ଊର୍ଦ୍ଧ୍ୱକୁ ଉଠି ଅନାବିଳ ଶାନ୍ତି ଓ ପୂର୍ଣ୍ଣ ସ୍ଥିରତା ମଧ୍ୟରେ ନିଜର ଭାଗ୍ୟ ନିଜେ ନିର୍ଣ୍ଣୟ କରିପାରିବ ।

ଶିଷ୍ୟ ପଚାରିଲେ, ପ୍ରଭୁ କେଉଁ ଧ୍ୟାନର ସହାୟତାରେ ମନୁଷ୍ୟ ଅଭିଜ୍ଞା (ଅଲୌକିକ ଶକ୍ତିପୁଞ୍ଜ) ପର୍ଯ୍ୟନ୍ତ ପହଞ୍ଚିପାରେ ?

ଉତ୍ତରରେ ଧ୍ୟାନର ଚରୋଟି ସ୍ତର ସଂପର୍କରେ ବୁଦ୍ଧଦେବ କହିଥିଲେ–

ଧ୍ୟାନର ପ୍ରଥମ ସ୍ତରରେ, ଏକାନ୍ତରେ ଧ୍ୟାନ କରିବ, ଯାହାଫଳରେ ତୁମେ ନିଜ ମନକୁ ଇନ୍ଦ୍ରିୟମାନଙ୍କର କବଳରୁ ମୁକ୍ତ ରଖିପାରିବ ।

ଧ୍ୟାନର ଦ୍ୱିତୀୟ ସ୍ତରରେ, ମନ ଏକ ଅବର୍ଣ୍ଣନୀୟ ଆନନ୍ଦରେ ଭରପୂର ହୋଇଯାଇ ସ୍ଥିର ଅବସ୍ଥାରେ ରହିଯାଇଥାଏ ।

ଧ୍ୟାନର ତୃତୀୟ ସ୍ତରରେ, ମନ ଆଧ୍ୟାତ୍ମିକ ବିଷୟ ଚିନ୍ତନରୁ ଆନନ୍ଦ ଉପଲବ୍ଧି କରେ ।

ଧ୍ୟାନର ଚତୁର୍ଥ ସ୍ତରରେ, ମନ ପୂର୍ଣ୍ଣ ପବିତ୍ରତା ଓ ଶାନ୍ତ ଅବସ୍ଥାରେ ସମସ୍ତ ହର୍ଷ ଓ ବିଷାଦର ଊର୍ଦ୍ଧ୍ୱରେ ରହିଥାଏ ।

ତୁମେ ବିନମ୍ର ହୁଅ । ଯାହା ତୁମ ମନକୁ ଦୁର୍ବଳ କରିଦିଏ ସେପରି ଅନୁଚିତ ଆଚରଣ ତୁମେ ପରିତ୍ୟାଗ କର ।

ଶିଷ୍ୟ ପ୍ରଶ୍ନ କଲେ, ହେ ତଥାଗତ ! ମୋ ପ୍ରଭୁ, କୃପାକରି ମୋତେ ଋଦ୍ଧିପାଦର (ଜଡ଼ତା ଉପରେ ଆତ୍ମଚୈତନ୍ୟର ବିଜୟର) ଉପଦେଶ ଦିଅନ୍ତୁ ।

ଉତ୍ତରରେ ତଥାଗତ କହିଲେ–ଚାରି ପ୍ରକାରର ସାଧନା ଦ୍ୱାରା ଜଡ଼ତା ଉପରେ ଆତ୍ମଚୈତନ୍ୟର ବିଜୟ ସାଧିତ ହୋଇଥାଏ ।

୧. ମନରେ ଯେପରି କୌଣସି ଦୁର୍ଗୁଣ ବା ଅବିଦ୍ୟା ନ ଜନ୍ମେ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦିଅ ।

୨. ଯେଉଁ ଦୁର୍ଗୁଣଗୁଡ଼ିକ ରହିଛି, ତାର ବିନାଶ ଘଟାଅ ।

୩. ସେହି ସଦ୍‌ଗୁଣଗୁଡ଼ିକର ଅଧିକାରୀ ହୁଅ, ଯାହାକି ତୁମଠାରେ ଆଗରୁ ନ ଥିଲା ।

୪. ନିଷ୍ଠା ଓ ଅଧ୍ୟବସାୟ ସହକାରେ ନିଜର ସ୍ୱରୂପ ଅନ୍ୱେଷଣରେ ବ୍ରତୀ ହୁଅ । ତା'ହେଲେ ପରିଶେଷରେ ସତ୍ୟର ସନ୍ଧାନ ପାଇପାରିବ ।



# ମୋର ମତ

ତଥାଗତ ତାଙ୍କର ପ୍ରଧାନ ଶିଷ୍ୟ ଆନନ୍ଦଙ୍କୁ ଉପଦେଶ ଦେଇ କହିଲେ–ସଂସାରରେ ଭିନ୍ନ ଭିନ୍ନ ଧରଣର ସଭାମାନ ରହିଛି, ଯେପରିକି ଭଦ୍ରଜନ ସଭା, ବ୍ରାହ୍ମଣମାନଙ୍କ ସଭା, ଗୃହସ୍ଥମାନଙ୍କ ସଭା, ଭିକ୍ଷୁମାନଙ୍କ ସଭା ଓ ଅନ୍ୟ ଲୋକମାନଙ୍କର ସଭା । ଯେତେବେଳେ ମୁଁ କୌଣସି ସଭାରେ ପ୍ରବେଶ କରେ, ମୁଁ ଆସନ ଗ୍ରହଣ କରିବା ପୂର୍ବରୁ ଶ୍ରୋତାମାନଙ୍କ ସହିତ ନିଜକୁ ଏକାତ୍ମ କରି ଦେଇଥାଏ ଓ ସେମାନଙ୍କ ରଙ୍ଗରେ ନିଜ ରଙ୍ଗକୁ ମିଶାଇ ଦିଏ । ମୁଁ ସେମାନଙ୍କ ଭାଷା ସହିତ ନିଜର ଭାଷାକୁ ସମାନ କରିଦେଇଥାଏ । ତାହାପରେ ମୁଁ ଧାର୍ମିକ ପ୍ରବଚନ ଦ୍ୱାରା ସେମାନଙ୍କୁ ଉପଦେଶ ଦେଇ ଆହ୍ଲାଦିତ ଓ ହର୍ଷିତ କରିଥାଏ ଏବଂ ସେମାନଙ୍କ ମନକୁ ମୋହିତ କରି ମୋର ମତକୁ ପ୍ରଚାର କରିଥାଏ ।

ମୋର ମତ ହେଉଛି ସାଗର ସମାନ । ମୋର ମତ ଓ ସାଗର କ୍ରମଶଃ ଗଭୀର ହୋଇଯାଉଛନ୍ତି । ସମସ୍ତ ପରିବର୍ତ୍ତନ ଭିତରେ ମଧ୍ୟ ଉଭୟ ନିଜର ବୈଶିଷ୍ଟ୍ୟ ବଜାୟ ରଖିଛନ୍ତି ।

ସବୁ ନଦୀର ଲକ୍ଷ୍ୟ ଏବଂ ମେଘରୁ ଉତ୍ପନ୍ନ ବର୍ଷାର ଲକ୍ଷ୍ୟ ହେଉଛି ସାଗର । କିନ୍ତୁ ସାଗରର ଜଳ ସବୁବେଳେ ସମାନ ରହିଥାଏ । ସେହିପରି କୋଟି କୋଟି ଲୋକଙ୍କ ଦ୍ୱାରା ସ୍ୱୀକାର କରାଯାଇଥିବା ଧର୍ମ ସବୁବେଳେ ସମାନ ରହିଥାଏ । ସାଗର ଓ ଧର୍ମ ଉଭୟ ମଣିମୁକ୍ତା ପରିପୂର୍ଣ୍ଣ ଏବଂ ଉଭୟଙ୍କ ଭିତରେ ମହତ୍ତମ ପ୍ରାଣୀମାନେ ବାସ କରନ୍ତି । ଯେପରି ମହାସାଗର-ଜଳର କେବଳ ଗୋଟିଏ ମାତ୍ର ସ୍ୱାଦ ରହିଛି, ଯାହାକି ଲବଣାକ୍ତ, ସେହିପରି ମୋର ମତ ଭିତରେ କେବଳ ଗୋଟିଏ ମାତ୍ର ସୁବାସ ରହିଛି ଏବଂ ତାହା ହେଉଛି ମୁକ୍ତିର ସୁବାସ । ମୋର ମତ ହେଉଛି ଜଳ ସମାନ, ଯାହାକି ବିନା ଭେଦଭାବରେ ସବୁ କିଛିକୁ ଧୋଇ ସଫା କରିଦେଇଥାଏ । ମୋର ମତ ହେଉଛି ଅଗ୍ନି ସମାନ, ଯାହାକି ବଡ଼ ଛୋଟ ସବୁ ବସ୍ତୁକୁ ଉଦରସ୍ଥ କରିଦେଇଥାଏ । ମୋର ମତ ହେଉଛି ସ୍ୱର୍ଗ ସମାନ, ଯେଉଁଠାରେ କି ପୁରୁଷ,

ସ୍ତ୍ରୀ, ବାଳକ, ବାଳିକା, ଧନୀ, ଦରିଦ୍ର, ବଳବାନ୍ ଓ ଦୁର୍ବଳ ସମସ୍ତଙ୍କୁ ସ୍ୱାଗତ କରିବା ପାଇଁ ପର୍ଯ୍ୟାପ୍ତ ସ୍ଥାନ ରହିଛି ।

ଯେପରି ବଡ଼ ବଡ଼ ନଦୀସବୁ ସାଗର ମଧ୍ୟରେ ପ୍ରବେଶ କରି ନିଜ ନିଜର ନାମ ପରିତ୍ୟାଗ କରିଦେଇ ମହାସାଗର ରୂପ ଧାରଣ କରିଥାନ୍ତି, ସେପରି ସବୁ ଜାତିର ଲୋକେ ନିଜ ନିଜ କୁଳଧର୍ମ ପରିତ୍ୟାଗ କରି ସଂଘରେ ପ୍ରବିଷ୍ଟ ହୋଇ ଭ୍ରାତୃତ୍ୱର ବନ୍ଧନରେ ବାନ୍ଧି ହୋଇଯାଇଥାନ୍ତି ଏବଂ ବୁଦ୍ଧଙ୍କର ସନ୍ତାନ ରୂପେ ପରିଚିତ ହୋଇଥାନ୍ତି ।

ଯେତେବେଳେ ମୁଁ ମୁହଁ ଖୋଲି କିଛି ଉପଦେଶ ଦିଏ, ସେତେବେଳେ ମୋତେ ଚିହ୍ନି ନ ଥିବା ଲୋକମାନେ କହିଥାନ୍ତି "ଏହି ବ୍ୟକ୍ତି ଜଣକ କିଏ, ଯିଏ କି ଏପରି କଥାମାନ କହୁଛନ୍ତି ? ଏହି ବ୍ୟକ୍ତି ମନୁଷ୍ୟ ନା ଭଗବାନ ?" ସେମାନଙ୍କୁ ଉପଦେଶ ଦେଇ ହର୍ଷିତ, ଆହ୍ଲାଦିତ ଓ ମୋହିତ କରିବା ପରେ, ମୁଁ ସେଠାରୁ ଅଦୃଶ୍ୟ ହୋଇଯାଇଥାଏ । ମୁଁ ଚାଲିଯିବା ପରେ ମଧ୍ୟ ସେମାନେ ମୋତେ ଜାଣିପାରନ୍ତି ନାହିଁ ।

କାହାରି ନିନ୍ଦା କର ନାହିଁ, କାହାରିକୁ କାୟ-ମନ-ବାକ୍ୟରେ ଆଘାତ ଦିଅ ନାହିଁ,ମୌଳିକ ଉପଦେଶ ଅନୁସାରେ ଜୀବନ ବିତାଅ, ମାତ୍ରା ଅନୁସାରେ ଭୋଜନ କର, ଏକାନ୍ତବାସ କର ଏବଂ ଚିତ୍ତକୁ ସର୍ବଦା ଯୋଗାରୂଢ଼ କରି ରଖ—ଏହାହିଁ ବୁଦ୍ଧଙ୍କର ଉପଦେଶ ।

ସେ କହିଲେ—ବୁଦ୍ଧଙ୍କର ଶିଷ୍ୟ, କାମନା-ବାସନାର ବିନାଶ ଘଟାଇ ଆନନ୍ଦିତ ଅବସ୍ଥାରେ ରହିଥାନ୍ତି । ପ୍ରଚଣ୍ଡ ସହନଶୀଳତା ଓ ଧୈର୍ଯ୍ୟ ହେଉଛି ତଥାଗତଙ୍କର ପରିଧାନ । ପରୋପକାର ଓ ପ୍ରାଣୀ ମାତ୍ରକେ ପ୍ରେମ ହେଉଛି ତଥାଗତଙ୍କର ନିବାସ । ସତ୍ୟ-ଧର୍ମର ସୂକ୍ଷ୍ମ ଅର୍ଥଗୁଡ଼ିକର ଧାରଣା ସହିତ ଏହାକୁ ସଠିକ ପ୍ରୟୋଗ କରିବାର ଜ୍ଞାନ ହେଉଛି ତଥାଗତଙ୍କର ଆସନ ।



# ମନ

ଯେତେଗୁଡ଼ିଏ ପ୍ରବୃତ୍ତି ରହିଛି, ତନ୍ମଧ୍ୟରେ ମନର ସ୍ଥାନ ପ୍ରଥମ । ଯେତେଗୁଡ଼ିଏ ଇନ୍ଦ୍ରିୟ ଶକ୍ତି ରହିଛି, ତନ୍ମଧ୍ୟରେ ମନ ସର୍ବୋତ୍କୃଷ୍ଟ ଅଟେ । ସମସ୍ତ ଆପେକ୍ଷିକ ବିଚାର ମନ ମଧ୍ୟରେ ହିଁ ଉତ୍ପନ୍ନ ହୁଏ । ମନ ହେଉଛି ସମସ୍ତ ଅନୁଭୂତିର ଅଗ୍ରଦୂତ । ଏହି ଭୌତିକ ଜଗତରେ ସମସ୍ତ ତତ୍ତ୍ୱ ମଧ୍ୟରେ ମନ ହେଉଛି ସୂକ୍ଷ୍ମତମ । ରୂପ ଗ୍ରହଣ କରୁଥିବା ସମସ୍ତ ବସ୍ତୁ-ଚୈତନ୍ୟ ମନ ମଧ୍ୟରେ ହିଁ ଉତ୍ପନ୍ନ ହୋଇଥାଏ । ଯଦି କେହି ଶୁଦ୍ଧ ମନରେ କଥା କହେ ବା କାର୍ଯ୍ୟ କରେ , ତା'ହେଲେ ଆନନ୍ଦ ତାହା ପଛରେ ଛାୟା ସମାନ ଧାଇଁଥାଏ ।

'ମୋତେ କେହି ଘୃଣା କରୁଛି, ମୋତେ କେହି ଅବିଶ୍ୱାସ କରୁଛି, ମୋତେ କେହି ଭୁଲ ବୁଝୁଛି ଏବଂ ମୋତେ କେହି ଧୋକା ଦେଉଛି' ଏ ପ୍ରକାର ଭାବନା ମନରେ ପୋଷଣ କଲେ, ମନ ବିଧ୍ୱଂସାତ୍ମକ ଭାବର ପ୍ରଭାବରୁ ମୁକ୍ତ ହୋଇପାରିବ ନାହିଁ । ଯେଉଁ ବ୍ୟକ୍ତି ନିଜ ମନ ଉପରେ ବିଜୟ ଲାଭ କରିପାରିଛନ୍ତି, ସେ ହଜାର ହଜାର ଶତ୍ରୁଙ୍କୁ ପରାଜିତ କରି ପାରିଥିବା ଜଣେ ବିଜୟୀ ବୀରଙ୍କ ଅପେକ୍ଷା ମଧ୍ୟ ଅଧିକ ମହାନ୍ ବୋଲି ବିବେଚିତ ହୋଇଥାନ୍ତି । କିନ୍ତୁ ହଜାର ହଜାର ଶତ୍ରୁଙ୍କୁ ପରାସ୍ତ କରିଥିବା ସେହି ବିଜୟୀ ବୀର ଯଦି ନିଜର ମନ ଓ ଇନ୍ଦ୍ରିୟମାନଙ୍କୁ ପରାସ୍ତ କରି ନ ପାରି ସେମାନଙ୍କର ଦାସ ହୋଇ ରହିଥିବେ, ତାଙ୍କୁ ମହାନ୍ ବୋଲି କୁହାଯାଇପାରିବ କି ?

ଯାହାଙ୍କର ମନ ସର୍ବଦା ବାହାରର ସୌନ୍ଦର୍ଯ୍ୟ ଓ ବିଭବ ଦିଗରେ ଧାବମାନ, ଯାହାଙ୍କର ମନ ଇନ୍ଦ୍ରିୟମାନଙ୍କୁ ନିୟନ୍ତ୍ରିତ କରିପାରି ନାହିଁ, ଯାହାଙ୍କର ମନ ଅଶୁଦ୍ଧ ଭୋଜନ ପ୍ରତି ଲାଳାୟିତ, ଯାହାଙ୍କ ମନରେ ଆଳସ୍ୟ ଭାବ ଭରି ରହିଛି ଓ ଯାହାଙ୍କ ମନରେ ନୈତିକ ମୂଲ୍ୟବୋଧ ନାହିଁ, ସେ ସର୍ବଦା ଅଜ୍ଞାନ ଅନ୍ଧକାର ମଧ୍ୟରେ ଦୁଃଖରେ ଘାରି ହୋଇ ଦୋଦୁଲ୍ୟମାନ ଅବସ୍ଥାରେ ରହିଥାନ୍ତି, ଠିକ୍ ଯେପରି ପ୍ରବଳ ଝଡ଼ ତୋଫାନ ଗୋଟିଏ ଶୁଖିଲା ଗଛକୁ ଦୋହଲାଇ ଦେଇଥାଏ ।

ଗୋଟିଏ ଛପର ଘରର ଚାଳ ଉଲୁରି ଯାଇଥିଲେ ଯେପରି ବର୍ଷା ପାଣି ଘର ଭିତରେ ପ୍ରବେଶ କରେ, ସେହିପରି ଆତ୍ମନିଷ୍ଠ ଧ୍ୟାନରୁ ବିରତ ମନ ଭିତରେ ଅନ୍ୟ ପ୍ରତି ଅସୂୟା ଭାବ, ବିଷୟାସକ୍ତି ଏବଂ ଭ୍ରମ ପ୍ରବେଶ କରିଥାଏ ।

ଯାହାଙ୍କ ମନରେ କାମ-ପ୍ରବଣତା ନାହିଁ, ଯାହାଙ୍କ ମନରେ କାହାରି ପ୍ରତି ଘୃଣା ଓ ଦ୍ୱେଷ ନାହିଁ ଓ ଯେଉଁ ବ୍ୟକ୍ତି ମନରୁ ଶୁଭ ଓ ଅଶୁଭ ଉଭୟ ଚିନ୍ତା ପରିତ୍ୟାଗ କରିଛନ୍ତି, ସେହି ଜାଗ୍ରତ ବ୍ୟକ୍ତିଙ୍କର କାହାରିକୁ ଭୟ ନ ଥାଏ ।

ଯେଉଁ ବ୍ୟକ୍ତି ଅଜ୍ଞାନର ପଥ ଅନୁସରଣ କରୁଛନ୍ତି, ତାଙ୍କର ଘୋର ଶତ୍ରୁ ଦ୍ୱାରା ସେ ଯେତିକି କ୍ଷତିଗ୍ରସ୍ତ ହେଉ ନାହାନ୍ତି, ତାହା ଅପେକ୍ଷା ଅଧିକ କ୍ଷତିଗ୍ରସ୍ତ ହେଉଛନ୍ତି ଏହି ଅଜ୍ଞାନ ଅବସ୍ଥା ଯୋଗୁଁ ।

ତୀର ନିର୍ମାଣ କରୁଥବା କାରିଗର ଯେପରି ତୀରକୁ ସଜାଡ଼ି ସିଧା କରିଥାଏ, ସେହିପରି ବିଜ୍ଞ ବ୍ୟକ୍ତି ଅସ୍ଥିର, ଚଞ୍ଚଳ ଓ ଅନିୟନ୍ତ୍ରିତ ମନକୁ ଆୟତ୍ତ କରି ଠିକଣା ବାଟରେ ପରିଚାଳିତ କରିଥାନ୍ତି ।

ମନକୁ ନିୟନ୍ତ୍ରଣରେ ରଖିବା ବଡ଼ କଷ୍ଟକର କାର୍ଯ୍ୟ । ମନୁଷ୍ୟର ମନ ହେଉଛି ଅତି ସୂକ୍ଷ୍ମ ତଥା ଯେଉଁଆଡ଼େ ଇଚ୍ଛା ସେହିଆଡ଼େ ତୁରନ୍ତ ଗତି କରେ । ତେଣୁ ମନକୁ ନିୟନ୍ତ୍ରଣ କରିବା ହେଉଛି ଏକ ଉତ୍ତମ କାର୍ଯ୍ୟ । ଯାହାଙ୍କ ମନ ନିଜ ବଶରେ ରହିଛି, ସେ ସର୍ବଦା ଆନନ୍ଦିତ ଅବସ୍ଥାରେ ରହିଥାନ୍ତି ।

ମନ କ୍ଷଣକ ମଧ୍ୟରେ ଅତି ଦୂରକୁ ଗତି କରିଥାଏ ଏବଂ ଯେଉଁଠାରେ ଇଚ୍ଛା ସେଠାରେ ବିଚରଣ କରିଥାଏ । ଏହା ହେଉଛି ଅଶରୀରୀ । ଏହା ହେଉଛି ଚେତନାର ମୂଳ ପୀଠ । ମନକୁ ସଂଯମ କରୁଥିବା ବ୍ୟକ୍ତି କାମ-କାଞ୍ଚନର ଆକର୍ଷଣରୁ ମୁକ୍ତ ରହିଥାନ୍ତି ।

ମାତା-ପିତା ଓ ଭାଇ-ବନ୍ଧୁ ଯେଉଁ ମଙ୍ଗଳ ସାଧନ କରି ନ ପାରନ୍ତି, ତାହା ଅପେକ୍ଷା ଅଧିକ ମଙ୍ଗଳ ସାଧନ କରିଥାଏ ଏକ ସୁନିୟନ୍ତ୍ରିତ ମନ । କିନ୍ତୁ ସେହି ମନ ଯଦି ଭୁଲ୍ ମାର୍ଗରେ ଗତି କରେ, ତାହେଲେ ଶତ୍ରୁ ଶତ୍ରୁ ପ୍ରତି

ଯେତେ କ୍ଷତିକାରକ ହୋଇ ନ ଥାଏ, ତାହା ଅପେକ୍ଷା ଅଧିକ କ୍ଷତି କରିଥାଏ ନିଜ ମନ ।

ଅଭ୍ୟାସର ଅଭାବ ହେଉଛି ଧ୍ୟାନର ଅପବିତ୍ରତା, ଅପରିଚ୍ଛନ୍ନତା ହେଉଛି ଶରୀରର ଅପବିତ୍ରତା, ପ୍ରମାଦ ହେଉଛି ଇନ୍ଦ୍ରିୟମାନଙ୍କର ଅପବିତ୍ରତା ଆଉ ଚଞ୍ଚଳ ସ୍ୱଭାବ ହେଉଛି ମନର ଅପବିତ୍ରତା ।

ଯେଉଁ ବ୍ୟକ୍ତି ଜାଗ୍ରତ ଅବସ୍ଥା ପ୍ରାପ୍ତ ହୋଇଛନ୍ତି, ଯାହାଙ୍କର ମନରେ କୌଣସି ପ୍ରକାର କାମନା-ବାସନା ନାହିଁ, ସେ ନିର୍ଭୟ ଅବସ୍ଥାରେ ରହିଥାନ୍ତି । ଦୁଃଖ ତାଙ୍କୁ ସ୍ପର୍ଶ କରିପାରେ ନାହିଁ ।

ସମସ୍ତ ପ୍ରକାର ଅମଙ୍ଗଳ ଓ ଖରାପ କାର୍ଯ୍ୟରୁ ବିରତ ରହି ସର୍ବଦା ସତ୍‌କର୍ମରେ ମନୋନିବେଶ କର ଏବଂ ନିଜର ମନକୁ ଶୁଦ୍ଧ ଓ ପବିତ୍ର ରଖ । ଦୃଢ଼ ସଂକଳ୍ପ ସହକାରେ ନିଷ୍ଠାପର ଶ୍ରଦ୍ଧା ରଖ, ସଦାଚରଣର ନିୟମ ଲଂଘନ କର ନାହିଁ । ତୁମର ଆନନ୍ଦ କୌଣସି ବାହ୍ୟ ବସ୍ତୁ ଉପରେ ଆଧାରିତ ନ ହୋଇ ନିଜର ଶୁଦ୍ଧ ମନ ଉପରେ ହିଁ ଆଧାରିତ ହେଉ, କାରଣ ନିଜର ମନ ଭିତରେ ହିଁ ଆନନ୍ଦର ଖଣି ରହିଛି ।

ଏହି ପ୍ରକାରେ ତୁମର ଯଶ ଯୁଗ ଯୁଗ ଧରି ଅତୁଟ ରହିବ ଏବଂ ତୁମେ ତଥାଗତଙ୍କର ସ୍ନେହର ପାତ୍ର ହୋଇ ରହିଥିବ—ଏହା ହିଁ ବୁଦ୍ଧଙ୍କର ମତ ।



# ଆତ୍ମା

ଯେଉଁ ବ୍ୟକ୍ତି ସ୍ୱପ୍ରକୃତିକୁ ଜାଣନ୍ତି ଏବଂ ନିଜର ଇନ୍ଦ୍ରିୟମାନେ କିପରି କାର୍ଯ୍ୟ କରନ୍ତି ତାହା ବୁଝି ପାରିଥାନ୍ତି, ସେତେବେଳେ ତାଙ୍କପାଇଁ 'ମୁଁ'ର କୌଣସି ସ୍ଥାନ ନ ଥାଏ । ଏହି ପ୍ରକାରରେ ସେ ଅପରିସୀମ ଶାନ୍ତିର ଅଧିକାରୀ ହୋଇଥାନ୍ତି ।

ଯଦି ସମସ୍ତ କର୍ମରେ 'ମୁଁ' ଭାବ ନ ଥାଏ, ତାହାହେଲେ 'ମୁଁ'ର ସତ୍ତା ନ ଥାଏ, କର୍ମର ପଶ୍ଚାତ୍‌ରେ ଯଦି କୌଣସି କର୍ତ୍ତା ଭାବ ନ ଥାଏ, ଜାଣିବା ପଛରେ କୌଣସି ଜ୍ଞାତା ନ ଥାଏ ।

ତୁମେ ଯେଉଁ 'ମୁଁ'ର ଦାସ ହୋଇ ନିଜ ସେବାରେ ଦିନରାତି ଖଟୁଛ ଏବଂ ଜନ୍ମ, ବାର୍ଦ୍ଧକ୍ୟ, ରୋଗ ଓ ମୃତ୍ୟୁର ଭୟରେ ଜୀବନଯାପନ କରୁଛ, ତେବେ ଏହି ସୁସମାଚାରଟି ଶୁଣ ଯେ ତୁମର କ୍ରୁର ସ୍ୱାମୀତ୍ୱ 'ମୁଁ'ର କୌଣସି ଅସ୍ତିତ୍ୱ ନାହିଁ ।

ଅହଂକାର ହେଉଛି ଏକ ମସ୍ତବଡ଼ ତ୍ରୁଟି, ଏକ ଭ୍ରାନ୍ତି ଓ ଏକ ଦୁଃସ୍ୱପ୍ନ । ନିଜର ଆଖି ଖୋଲ ଆଉ ଜାଗି ଉଠ । ବସ୍ତୁକୁ ଯଥାର୍ଥ ରୂପରେ ଦେଖ, ତା'ହେଲେ ସୁଖୀ ହେବ । ଜାଗ୍ରତ ବ୍ୟକ୍ତି ଦୁଃସ୍ୱପ୍ନ ଦ୍ୱାରା ଭୟଭୀତ ହୁଏ ନାହିଁ । ସାପ ପରି ଦେଖା ଯାଉଥିବା ଦଉଡ଼ିର ପ୍ରକୃତି ଯେଉଁ ବ୍ୟକ୍ତି ଜାଣିଥାଏ, ସେ ଦଉଡ଼ିକୁ ଦେଖି ଭୟ କରେ ନାହିଁ ।

ଯେଉଁ ବ୍ୟକ୍ତି ଜାଣିପାରେ ଯେ 'ମୁଁ' ବୋଲି କୌଣସି ସତ୍ତା ନାହିଁ, ତା'ର ସମସ୍ତ ଅହଂକାର ଦୂରୀଭୂତ ହୋଇଯାଇଥାଏ ।

ପୂର୍ବଜନ୍ମର ସଂସ୍କାର ରୂପେ ପ୍ରାପ୍ତ ସାଂସାରିକ ବସ୍ତୁ ପ୍ରତି ମୋହ, ଲୋଲୁପତା ଏବଂ ଇନ୍ଦ୍ରିୟ-ଆସକ୍ତି ଏ ଜନ୍ମରେ ଘୋର ଦୁଃଖର କାରଣ ହୋଇଥାଏ । ସମସ୍ତ ସ୍ୱାର୍ଥପର ଅହଂଭାବ ପରିହାର କର । ତା'ହେଲେ ଯାଇ ତୁମେ ନିର୍ମଳ ଶାନ୍ତ ଅବସ୍ଥା ପ୍ରାପ୍ତ ହେବ; ଯେଉଁଥିରେ କି ସମସ୍ତ କଲ୍ୟାଣ, ପୂର୍ଣ୍ଣ ପ୍ରଶାନ୍ତି ଓ ବିବେକ ନିହିତ ରହିଛି ।

## ଆତ୍ମା

ଯଦି କେହି ନିଜେ ନିଜକୁ ପ୍ରିୟ ବୋଲି ଭାବେ, ତାହେଲେ ତାକୁ ନିଜର ସୁରକ୍ଷା କରିବାକୁ ଦିଅ କିନ୍ତୁ ବିବେକୀ ବ୍ୟକ୍ତି ତିନି ପ୍ରହର ସତର୍କ ରହିବା ଦରକାର ।

ମନୁଷ୍ୟ ନିଜେ ନିଜର ଅମଙ୍ଗଳର କାରଣ ହୋଇଥାଏ ।

ମନୁଷ୍ୟ ନିଜେ ନିଜକୁ ଦୂଷିତ୍ କରିଥାଏ ।

ମନୁଷ୍ୟ ନିଜେ ନିଜକୁ ଅମଙ୍ଗଳରୁ ରକ୍ଷା କରିଥାଏ ।

ମନୁଷ୍ୟ ନିଜେ ନିଜକୁ ପବିତ୍ର କରିଥାଏ ।

ମନୁଷ୍ୟର ନିଜ ଉପରେ ହିଁ ପବିତ୍ରତା ଓ ଅପବିତ୍ରତା ନିର୍ଭର କରେ ।



# ମନ୍ଦ, ଭଲ ଓ ଦୁଃଖ

ଭଗବାନ ବୁଦ୍ଧ କହିଲେ–

ହେ ମିତ୍ର ! ଜାଣି ରଖ ଯେ ଜୀବହତ୍ୟା ହେଉଛି ମନ୍ଦ କାର୍ଯ୍ୟ, ଚୋରି କରିବା ହେଉଛି ମନ୍ଦ କାର୍ଯ୍ୟ, କାମାତୁର ହେବା ହେଉଛି ମନ୍ଦ କାର୍ଯ୍ୟ, ମିଥ୍ୟା କହିବା ହେଉଛି ମନ୍ଦ କାର୍ଯ୍ୟ, ପରନିନ୍ଦା ହେଉଛି ମନ୍ଦ କାର୍ଯ୍ୟ, ଈର୍ଷା କରିବା ହେଉଛି ମନ୍ଦ କାର୍ଯ୍ୟ, ଘୃଣା କରିବା ହେଉଛି ମନ୍ଦ କାର୍ଯ୍ୟ, ବୃଥା ବାକ୍ୟାଳାପ ହେଉଛି ମନ୍ଦ କାର୍ଯ୍ୟ ଏବଂ ମିଥ୍ୟା ସିଦ୍ଧାନ୍ତ ପୋଷଣ କରିବା ହେଉଛି ମନ୍ଦ କାର୍ଯ୍ୟ ।

ହେ ମୋର ମିତ୍ରଗଣ, ମନ୍ଦ କାର୍ଯ୍ୟର ମୂଳ କାରଣ କ'ଣ ? ସମସ୍ତ ମନ୍ଦ କାର୍ଯ୍ୟର ମୂଳରେ ରହିଛି କାମନା । ଦ୍ୱେଷ ହେଉଛି ମନ୍ଦ କାର୍ଯ୍ୟର ମୂଳ କାରଣ । ମାୟା ଓ ଭ୍ରମ ହେଉଛି ମନ୍ଦ କାର୍ଯ୍ୟର ମୂଳ କାରଣ ।

'ମନ୍ଦ ମୋତେ ସ୍ପର୍ଶ କରିପାରିବ ନାହିଁ' ବୋଲି ହାଲୁକା ଭାବରେ ଚିନ୍ତା କରିବା ଉଚିତ ନୁହେଁ । କାରଣ ବୁନ୍ଦା ବୁନ୍ଦା ଜଳ ଯେପରି ଗୋଟିଏ କଳସୀକୁ ପୂର୍ଣ୍ଣ କରିଦେଇଥାଏ, ସେହିପରି ମୂର୍ଖ ବ୍ୟକ୍ତି ଛୋଟ ଛୋଟ ମନ୍ଦ କାର୍ଯ୍ୟ କରି ନିଜକୁ ମନ୍ଦରେ ହିଁ ପୂର୍ଣ୍ଣ କରିଦେଇଥାଏ । କୌଣସି ଏକ ମନ୍ଦ କାର୍ଯ୍ୟକୁ ଅଧାରୁ ହିଁ ଛାଡ଼ିଦେବା ଉଚିତ; କାରଣ ଏ ଜନ୍ମର ଏକ କୁକର୍ମ ପରଜନ୍ମରେ ବି ବ୍ୟକ୍ତିକୁ ପୀଡ଼ା ଦେଇଥାଏ । ହଁ, ସତ୍ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବା ଉଚିତ, କାରଣ ଏପରି କଲେ ପରେ ପଶ୍ଚାତ୍ତାପ କରିବାକୁ ପଡ଼ି ନ ଥାଏ ।

ଦୁଷ୍କର୍ମର ପରିଣାମ ଅବଶ୍ୟମ୍ଭାବୀ । କୌଣସି ବ୍ୟକ୍ତି ମନ୍ଦ କର୍ମ କରି ଆକାଶ, ମର୍ତ୍ତ୍ୟ ଏବଂ ପୃଥିବୀର ଯେକୌଣସି ସ୍ଥାନରେ କିମ୍ବା ସାଗର ମଧ୍ୟରେ ଅଥବା ପର୍ବତ ଗୁମ୍ଫାରେ ଯେଉଁଠାରେ ରହିଲେ ମଧ୍ୟ ପରିଣାମ ଭୋଗିବାରୁ ତ୍ରାହି ପାଇ ପାରି ନ ଥାଏ । ପରିଣାମ ତା' ପଛରେ ଧାଇଁଥାଏ ।

## ମନ୍ଦ, ଭଲ ଓ ଦୁଃଖ

ପ୍ରାଣୀମାନଙ୍କର ସମସ୍ତ କର୍ମ ଦଶଟି ଅମଙ୍ଗଳ ଦ୍ୱାରା ଦୂଷିତ ହୋଇଥାଏ । ଏହି ଦଶଟି ଅମଙ୍ଗଳ କାର୍ଯ୍ୟଠାରୁ ଦୂରରେ ରହିଲେ ହିଁ ମନୁଷ୍ୟ ଜୀବନ ସାର୍ଥକ ହୋଇଥାଏ । ତନ୍ମଧ୍ୟରୁ ତିନୋଟି ମନ୍ଦ କାର୍ଯ୍ୟ ହେଉଛି ଶରୀରର, ଚାରୋଟି ମନ୍ଦ କାର୍ଯ୍ୟ ହେଉଛି ଜିଭର ଏବଂ ତିନୋଟି ମନ୍ଦ କାର୍ଯ୍ୟ ହେଉଛି ମନର ।

ଶରୀରର ମନ୍ଦ କାର୍ଯ୍ୟ ହେଉଛି—ହତ୍ୟା କରିବା, ଚୋରି କରିବା ଓ ବ୍ୟଭିଚାର କରିବା; ଜିଭର ମନ୍ଦ କାର୍ଯ୍ୟ ହେଉଛି ମିଥ୍ୟା କହିବା, ପରନିନ୍ଦା ଗାଇ ବୁଲିବା, ଅନ୍ୟକୁ ଗାଳି ଦେବା ଏବଂ ବୃଥାରେ ଏଣୁ ତେଣୁ ବାଜେ କଥା କହିବା ଓ ମନର ମନ୍ଦ କାର୍ଯ୍ୟ ହେଲା—ଲାଳସା, ଦ୍ୱେଷ ଓ ତ୍ରୁଟି ।

ତଥାଗତ କହିଲେ—ମୁଁ ତୁମମାନଙ୍କୁ ଏହି ଦଶଟି ମନ୍ଦ କାର୍ଯ୍ୟରୁ ଦୂରରେ ରହି ଦଶଟି ଭଲ କାର୍ଯ୍ୟ କରିବାର ଶିକ୍ଷା ଦେଉଛି ଶୁଣ ।

(୧) କାହାରିକୁ ହତ୍ୟା ନ କରି ବରଂ ଜୀବନକୁ ସମ୍ମାନ ଦିଅ ।

(୨) ଚୋରି ଓ ଲୁଟ୍‌ପାଟ ନ କରି ବରଂ ପ୍ରତ୍ୟେକ ବ୍ୟକ୍ତିଙ୍କୁ ତାଙ୍କର କଷ୍ଟୋପାର୍ଜିତ ଧନର ଉପଯୋଗ କରିବାକୁ ଦିଅ ।

(୩) ଅପବିତ୍ରତାଠାରୁ ଦୂରରେ ରହି ବ୍ରହ୍ମଚର୍ଯ୍ୟ ପାଳନ କରି ଜୀବନ ବିତାଅ ।

(୪) ମିଥ୍ୟା କଥା ନ କହି ସତ୍ୟବାଦୀ ହୁଅ । ବିନା ଭୟରେ ସ୍ନେହପୂର୍ଣ୍ଣ ହୃଦୟରେ ବିବେକ ଅନୁସାରେ ସତ୍ୟ କଥା କୁହ ।

(୫) ମିଥ୍ୟା ଖବର ସୃଷ୍ଟି କର ନାହିଁ କିମ୍ବା ପ୍ରଚାର କର ନାହିଁ । ପରର ଛିଦ୍ର ଅନ୍ୱେଷଣ ନ କରି ବରଂ ସେମାନଙ୍କର ସଦ୍‌ଗୁଣ ପ୍ରତି ଦୃଷ୍ଟି ଦିଅ ଏବଂ ଶତ୍ରୁମାନଙ୍କ କବଳରୁ ସେମାନଙ୍କୁ ରକ୍ଷା କର ।

(୬) କାହାରି ରାଣ ଖାଇ କଥା କୁହ ନାହିଁ ବରଂ ପରିମାର୍ଜିତ ଓ ମର୍ଯ୍ୟାଦା ସହକାରେ କଥା କୁହ ।

(୭) ଏଣୁ ତେଣୁ ଗୁଡ଼ାଏ ବାଜେ କଥା ଗପି ସମୟ ନଷ୍ଟ କର ନାହିଁ; ବରଂ ନୀରବରେ କାମ କରିଯାଅ ।

(୮) କାହାରି ଦ୍ରବ୍ୟ ପ୍ରତି ମନରେ ଲାଳସା ରଖ ନାହିଁ ଓ କାହାରି ପ୍ରତି ଦ୍ୱେଷ ରଖ ନାହିଁ ବରଂ ଅନ୍ୟର ସୌଭାଗ୍ୟ ଦେଖି ଖୁସି ହୁଅ ।

(୯) ନିଜର ହୃଦୟକୁ ଈର୍ଷାରୁ ମୁକ୍ତ ରଖ ଏବଂ ନିଜର ଶତ୍ରୁମାନଙ୍କ ପ୍ରତି ମଧ୍ୟ ମନରେ ଘୃଣା ଭାବ ରଖ ନାହିଁ ବରଂ ମନରେ ସବୁ ପ୍ରାଣୀଙ୍କ ପ୍ରତି ପ୍ରେମ ଓ ଦୟାଭାବ ପୋଷଣ କର ।

(୧୦) ମନରୁ ଅଜ୍ଞାନ ଦୂର କର ଏବଂ ସତ୍ୟକୁ ଜାଣିବା ପାଇଁ ଜିଜ୍ଞାସୁ ହୁଅ । ଏହାହିଁ ଅତ୍ୟନ୍ତ ଆବଶ୍ୟକ, ଅନ୍ୟଥା ତୁମେ ନାସ୍ତିକତା ଏବଂ ଭୁଲର ଶିକାର ହୋଇଯିବ ।

ଯଦି କୌଣସି ବ୍ୟକ୍ତି ପାପ କାର୍ଯ୍ୟ କରୁଥାଏ, ତାକୁ ସେଥିରୁ କ୍ଷାନ୍ତ କର ଓ ସେ ଯେପରି ପାପ କାର୍ଯ୍ୟ ଆଉ ନ କରେ, ସେଥିପାଇଁ ତାକୁ ସତ୍ ପରାମର୍ଶ ଦିଅ । ଖରାପ କାମ କଲେ ବିଷମୟ ପରିଣତି ଭୋଗ କରିବାକୁ ହୁଏ ବୋଲି ବୁଝାଇ ଦିଅ ।

ମନୁଷ୍ୟ ପ୍ରେମ ଦ୍ୱାରା କ୍ରୋଧୀକୁ, ପୁଣ୍ୟ ଦ୍ୱାରା ପାପୀକୁ, ଉଦାରତା ଦ୍ୱାରା ଲୋଭୀକୁ ଏବଂ ସତ୍ୟ ଦ୍ୱାରା ଅସତ୍ୟକୁ ପରାଜିତ କରିପାରେ ।

ଯଦି କୌଣସି ବ୍ୟକ୍ତି ମନ୍ଦ ଭାବନା ଦ୍ୱାରା ପ୍ରଣୋଦିତ ହୋଇ କିଛି କହେ କିମ୍ବା କିଛି କରେ, ତା'ହେଲେ ଶଗଡ଼ରେ ଯୋଚା ଯାଇଥିବା ବଳଦର ପଛେ ପଛେ ଚକ ଗଡୁଥିବା ପରି ତା' ପଛରେ ଦୁଃଖ ଧାବମାନ ହେଉଥିବ । ସୁତରାଂ ଆମେ ଆମର ବିଚାର ଓ ଭାବନାକୁ ପରୀକ୍ଷା ନିରୀକ୍ଷା କରିବା ଉଚିତ, ଯେପରିକି ଆମେ କୌଣସି ପାପ କରି ନ ବସୁ, କାରଣ କର୍ମର ପଛେ ପଛେ ଫଳ ଗୋଡ଼ାଇଥାଏ । ପାପୀ ବ୍ୟକ୍ତିକୁ ପାପ କାର୍ଯ୍ୟ ମହୁ ପରି ମିଠା ଲାଗେ । ଯେଉଁ ସମୟରୁ ଜଣେ ନିର୍ବୋଧ ନିଜର ନିର୍ବୋଧତାକୁ ବୁଝିପାରେ, ସେହି ସମୟରୁ ସେ ବୁଦ୍ଧିମାନ ବୋଲି ପରିଗଣିତ ହୋଇଥାଏ କିନ୍ତୁ ଯେଉଁ

ନିର୍ବୋଧ ବ୍ୟକ୍ତି ନିଜକୁ ବୁଦ୍ଧିମାନ୍ ବୋଲି ମନେ କରେ, ସେ ବାସ୍ତବରେ ନିର୍ବୋଧ ରୂପେ ହିଁ ରହିଯାଇଥାଏ ।

ପ୍ରଶ୍ନ—ଭଲ କାର୍ଯ୍ୟ କଅଣ ?

ତଥାଗତଙ୍କ ଉତ୍ତର—ଚୋରି କରିବା କାର୍ଯ୍ୟରୁ କ୍ଷାନ୍ତ ରହିବା, ଇନ୍ଦ୍ରିୟମାନଙ୍କର ଦାସତ୍ୱ ସ୍ୱୀକାର ନ କରିବା, ମିଥ୍ୟା ନ କହିବା, ପରନିନ୍ଦା ନ କରିବା, କାହାରି ପ୍ରତି କଠୋର ନ ହେବା, ବାଚାଳଙ୍କ ପରି ଏଣୁ ତେଣୁ ଗୁଡ଼ାଏ ବାଜେ କଥା ନ ଗପିବା, ମନରୁ ଈର୍ଷା ଭାବକୁ ବିତାଡ଼ିତ କରିବା, ଦ୍ୱେଷ ଭାବ ପୋଷଣ ନ କରିବା, ସତ୍ୟ ପଥରୁ ବିଚ୍ୟୁତ ନ ହେବା—ଏସବୁ ହେଉଛି ଭଲ କାର୍ଯ୍ୟ ।

ପ୍ରଶ୍ନ—ଭଲ କାର୍ଯ୍ୟର ମୂଳ କଅଣ ?

ଉତ୍ତର—ହେ ମିତ୍ର ! ବିଷୟ ବାସନାକୁ ମନରେ ସ୍ଥାନ ନ ଦେବା, କାମନା ପଛରେ ନ ଧାଇଁବା, ଘୃଣା ଭାବରୁ ମୁକ୍ତ ରହିବା ଏବଂ ମନରେ କୌଣସି ଭ୍ରାନ୍ତ ଧାରଣା ପୋଷଣ ନ କରିବା ହେଉଛି ଭଲ କାର୍ଯ୍ୟର ମୂଳ କଥା ।

ପ୍ରଶ୍ନ—ଦୁଃଖ କଅଣ ?

ତଥାଗତ ଉତ୍ତରରେ କହିଲେ—ହେ ଭାଇମାନେ ! ଜନ୍ମ ହେଉଛି ଦୁଃଖ, ବାର୍ଦ୍ଧକ୍ୟ ହେଉଛି ଦୁଃଖ, ରୋଗ ହେଉଛି ଦୁଃଖ, ଶୋକ ଓ ବିପତ୍ତି ହେଉଛି ଦୁଃଖ, ନୈରାଶ୍ୟ ହେଉଛି ଦୁଃଖ, କୁତ୍ସିତ ବସ୍ତୁ ସହିତ ସଂଲଗ୍ନତା ହେଉଛି ଦୁଃଖ, ଆମେ ଭଲ ପାଉଥିବା ବସ୍ତୁକୁ ହରାଇବା ହେଉଛି ଦୁଃଖ ଏବଂ କାମନା ପଛରେ ଧାଇଁ ବିଫଳ ହେବା ହେଉଛି ଦୁଃଖ ଭୋଗ ।

ପ୍ରଶ୍ନ—ଦୁଃଖର ମୂଳ କଅଣ ?

ଉତ୍ତର—କାମାନ୍ଧତା, ବିଷୟ-ଆସକ୍ତି, ଆଉ ସୁଖଭୋଗ କରିବା ପାଇଁ କାମନା କରି ବାରମ୍ବାର ଜନ୍ମ-ମରଣ ଚକ୍ରରେ ପଡ଼ିବା ହେଉଛି ଦୁଃଖଭୋଗର

କାରଣ । ଏହା ବ୍ୟତୀତ, ଇନ୍ଦ୍ରିୟମାନଙ୍କର ଦାସ ହେବା ଏବଂ ସ୍ୱାର୍ଥପରତା ମଧ୍ୟ ଦୁଃଖର କାରଣ ହୋଇଥାଏ ।

ପ୍ରଶ୍ନ – କେଉଁ ମାର୍ଗ ଅନୁସରଣ କଲେ ଦୁଃଖର ବିନାଶ ହୋଇଥାଏ ?

ଉତ୍ତର – ପବିତ୍ର ଅଷ୍ଟାଙ୍ଗିକ ମାର୍ଗ ଅନୁସରଣ କଲେ ହିଁ ଦୁଃଖର ବିନାଶ ହୋଇଥାଏ । ହେ ମିତ୍ରଗଣ ! ଯେଉଁ ସଦାଚାରୀ ପୁରୁଷ ଏହି ପ୍ରକାର ଦୁଃଖ-ଭୋଗ, ଦୁଃଖ ଭୋଗର ମୂଳ କାରଣ ଓ ଦୁଃଖରୁ ମୁକ୍ତି ପାଇବାର ମାର୍ଗ କଅଣ, ତାହା ବୁଝିପାରିଥାନ୍ତି, କାମନା-ବାସନାକୁ ଆମୂଳଚୂଳ ଉଚ୍ଛେଦ କରିଥାନ୍ତି, କ୍ରୋଧକୁ ଦମନ କରିଥାନ୍ତି ଏବଂ 'ମୁଁ ଓ ମୋର' ଏହି ଅଜ୍ଞତାର ବୃଥା ଦର୍ପକୁ ବିନାଶ କରି ବୁଦ୍ଧତ୍ୱ ପ୍ରାପ୍ତ ହୋଇଥାନ୍ତି, ସେ ଏହି ଜନ୍ମରେ ହିଁ ସମସ୍ତ ଦୁଃଖର ଅନ୍ତ ଘଟାଇ ନିର୍ବାଣ ପ୍ରାପ୍ତ ହୋଇଥାନ୍ତି ।



# ଭିକ୍ଷୁ

ତଥାଗତ କହିଲେ—ଏଇ ଜୀବନରେ ଯିଏ ଉଭୟ ପାପ ଓ ପୁଣ୍ୟର ଊର୍ଦ୍ଧ୍ୱରେ ରହିଥାନ୍ତି, ଯିଏ ପବିତ୍ର ଜୀବନ ଯାପନ କରିଥାନ୍ତି, ଯିଏ ଏ ସଂସାରରେ ବିଚାର ଓ ବିବେକ ପ୍ରୟୋଗ କରି ରହିଥାନ୍ତି, ସେହି ବ୍ୟକ୍ତିଙ୍କୁ ବାସ୍ତବରେ ଭିକ୍ଷୁ ବୋଲି କୁହାଯାଇଥାଏ ।

ମିଥ୍ୟା କଥା କହୁଥିବା ଅନୁଶାସନ-ବିହୀନ ବ୍ୟକ୍ତି ଲଣ୍ଡିତ ମସ୍ତକ ହେଲେ ବି ତପସ୍ୱୀ ହୋଇପାରନ୍ତି ନାହିଁ । ଯିଏ କାମନା ଓ ଲୋଭକୁ ପରିତ୍ୟାଗ କରିନାହାନ୍ତି, ସେ କିପରି ତପସ୍ୱୀ ହୋଇପାରିବେ ? ଯେଉଁ ବ୍ୟକ୍ତି ଛୋଟ ବଡ଼ ସବୁ ପ୍ରକାର ମନ୍ଦ କାର୍ଯ୍ୟକୁ ତ୍ୟାଗ କରିପାରିଛନ୍ତି, ସେ ହେଉଛନ୍ତି ତପସ୍ୱୀ । ଆଳସ୍ୟ-ପରାୟଣ ଅଜ୍ଞାନୀ ବ୍ୟକ୍ତି ମୌନ ରହିଲେ କଅଣ ସାଧୁ ହୋଇଯାଏ ? କିନ୍ତୁ ଯେଉଁ ବିଦ୍ୱାନ୍ ବ୍ୟକ୍ତି ତରାଜୁ ଧରି ଓଜନ କରିବା ପରି ଭଲକୁ ଗ୍ରହଣ କରି ମନ୍ଦକୁ ପରିତ୍ୟାଗ କରିଥାନ୍ତି, ସେ ହେଉଛନ୍ତି ସାଧୁ । କେବଳ ଭିକ୍ଷା କଲେ କଅଣ ଜଣେ ବ୍ୟକ୍ତି ଭିକ୍ଷୁ ହୋଇଯାଏ ?

ହେ ଭିକ୍ଷୁ, ତୁମେ ତୃଷ୍ଣାକୁ ମୂଳପୋଛ ନ କରିବା ଯାଏ ସନ୍ତୁଷ୍ଟ ହୋଇ ବସିପଡ଼ ନାହିଁ । ମନରୁ ସମସ୍ତ ପ୍ରକାର କଳୁଷିତ ଭାବନାକୁ ନିଶ୍ଚିହ୍ନ କରି ଦେବା ହିଁ ହେଉଛି ସବୁଠାରୁ ବଡ଼ ଧର୍ମ । ହେ ଭିକ୍ଷୁ, ତୁମେ ତୁମର ଦୀପ୍ତିକୁ ଏପରି ଭାବରେ ପ୍ରକାଶ କର, ଯେପରିକି ତୁମର ସାରା ଜୀବନ ଧର୍ମ ଓ ଧାର୍ମିକ ଅନୁଶାସନରେ ବିତିଯିବ । ତୁମେ ଶୀଳତାର ଆଚରଣ ପ୍ରତି ଧ୍ୟାନ ଦେଇ ଗୁରୁ ଓ ଗୁରୁଜନମାନଙ୍କୁ ସମ୍ମାନ ପ୍ରଦର୍ଶନ କର ଓ ସେବା ପରାୟଣ ହୁଅ ।

ଯେଉଁ ଭିକ୍ଷୁ ଜଣେ ସ୍ତ୍ରୀଲୋକକୁ ଅନୁଚିତ ଦୃଷ୍ଟିରେ ଦେଖେ କିମ୍ବା ତାକୁ ସ୍ପର୍ଶ କରେ, ସେ ତାର ବ୍ରହ୍ମଚର୍ଯ୍ୟ ପାଳନ ପ୍ରତିଜ୍ଞା ଭଙ୍ଗ କରିଥାଏ ଏବଂ ସେହି ଭିକ୍ଷୁ ବୁଦ୍ଧଙ୍କର ଶିଷ୍ୟ ହେବାର ଯୋଗ୍ୟତା ହରାଇଥାଏ ।

ହେ ଭିକ୍ଷୁ, ଯଦି ଅଗତ୍ୟା ତୁମକୁ ଜଣେ ସ୍ତ୍ରୀଲୋକ ସହିତ କଥାବାର୍ତ୍ତା କରିବାକୁ ପଡ଼େ, ପବିତ୍ର ହୃଦୟରେ ଏହା କର । ତୁମକୁ ମନରେ ଏହି ବିଚାର ରଖିବାକୁ ହେବ ଯେ "ମୁଁ ଜଣେ ଭିକ୍ଷୁ ଭାବରେ ଏହି ପାପପୂର୍ଣ୍ଣ ସଂସାରରେ ପଦ୍ମପତ୍ର ଯେପରି ପଙ୍କରୁ ଜାତ ହେଲେ ମଧ୍ୟ ପଙ୍କରୁ ସମ୍ପୂର୍ଣ୍ଣ ମୁକ୍ତ ରହେ, ସେପରି ପାପମୁକ୍ତ ଜୀବନଯାପନ କରିବି ।"

କୌଣସି ସ୍ତ୍ରୀଲୋକ ବୃଦ୍ଧା ହୋଇଥିଲେ, ତାଙ୍କୁ ମାତୃଜ୍ଞାନ କର, ଯୁବତୀ ହୋଇଥିଲେ, ତାଙ୍କୁ ନିଜର ଭଉଣୀ ଜ୍ଞାନ କର, ଆଉ ସେ ବାଳିକା ହୋଇଥିଲେ, କନ୍ୟା ବୋଲି ବିବେଚନା କର ।

ପୁରୁଷମାନଙ୍କଠାରେ କାମଭାବ ଅଧିକ ମାତ୍ରାରେ ରହିଥାଏ । ତେଣୁ ଏଥିପ୍ରତି ସାବଧାନ ରହିବା ଉଚିତ । ଗୋଟିଏ ତୀରର ଅଗ୍ରଭାଗ ତୀକ୍ଷ୍ଣ ହୋଇଥିବା ପରି ଭିକ୍ଷୁ ନିଜର ସଂଯମକୁ ତୀକ୍ଷ୍ଣ କରି ଜୀବନଯାପନ କରିବାର ବ୍ରତ ଅବଲମ୍ବନ କରିବେ ।

ହେ ଭିକ୍ଷୁ, ସଦ୍-ବିଚାରକୁ ନିଜର ଶିରସ୍ତ୍ରାଣ କର ଏବଂ ଦୃଢ଼ ସଂକଳ୍ପ ସହକାରେ କାମଭାବ ବିରୁଦ୍ଧରେ ସଂଗ୍ରାମ କର । ଯେତେବେଳେ କୌଣସି ବ୍ୟକ୍ତି ଜଣେ ନାରୀର ସୌନ୍ଦର୍ଯ୍ୟ ଦେଖି ବିମୋହିତ ହୋଇଯାନ୍ତି ଏବଂ ତାଙ୍କ ଚିତ୍ତ ଚଞ୍ଚଳ ହୋଇଉଠେ, ସେତେବେଳେ ଆକାଶକୁ ବାଦଲ ଢାଙ୍କିଦେବା ପରି ତାଙ୍କ ମନକୁ କାମ ଆତୁର କରି ଦେଇଥାଏ । ତେଣୁ ମନରେ ପାଶବିକ ପ୍ରବୃତ୍ତିକୁ ସ୍ଥାନ ଦେଇ କାମ ବାସନାକୁ ଚରିତାର୍ଥ କରିବାକୁ ଇଚ୍ଛା କରିବା ଅପେକ୍ଷା, ବରଂ ଉତପ୍ତ ତୀକ୍ଷ୍ଣ ଲୌହ ଦଣ୍ଡରେ ଆଖି ଦୁଇଟିକୁ ଫୋଡ଼ି ନଷ୍ଟ କରିଦେବା ଶ୍ରେୟସ୍କର ।

ଜଣେ ଭିକ୍ଷୁ ନିଜର ଶରୀର, ମନ ଓ ବାଣୀକୁ ସଂଯତ ଅବସ୍ଥାରେ ରଖିବା ଉଚିତ । ଯେଉଁ ଭିକ୍ଷୁ ସଂଯମ ରକ୍ଷା କରେ, ତାକୁ ଦୁଃଖ ସ୍ପର୍ଶ କରିପାରେ ନାହିଁ । ଯେଉଁ ବ୍ୟକ୍ତିଙ୍କର ମନ, ହସ୍ତ, ପାଦ ଓ ବଚନ ସଂଯତ, ଯେଉଁ ବ୍ୟକ୍ତି ଧ୍ୟାନ କରିବାରେ ଆନନ୍ଦ ଲାଭ କରନ୍ତି, ଯେଉଁ ବ୍ୟକ୍ତି ସଦାସର୍ବଦା ପ୍ରସନ୍ନ ଓ ପ୍ରଶାନ୍ତ ଚିତ୍ତରେ ରହିଥାନ୍ତି, ଯେଉଁ ବ୍ୟକ୍ତି ଏକାନ୍ତରେ ଆତ୍ମଚିନ୍ତନ କରନ୍ତି, ତାଙ୍କୁ ଭିକ୍ଷୁ କୁହାଯାଏ ।

# ଭିକ୍ଷୁ

ଯାହାଙ୍କଠାରେ 'ମୁଁ ଓ ମୋର' ଭାବ ନାହିଁ ଏବଂ ନିଜ ପାଖରେ ନ ଥିବା ବସ୍ତୁକୁ ପ୍ରାପ୍ତ କରିବା ପାଇଁ ଯେଉଁ ବ୍ୟକ୍ତି ମନରେ କାମନା ରଖି ବ୍ୟାକୁଳ ହୁଅନ୍ତି ନାହିଁ, ସେ ହିଁ ହେଉଛନ୍ତି ପ୍ରକୃତରେ ଭିକ୍ଷୁପଦବାଚ୍ୟ ।

ଯେଉଁ ଭିକ୍ଷୁ ଏକାନ୍ତ ବାସ କରନ୍ତି, ଯାହାଙ୍କର ମନ ଅନବରତ ସ୍ଥିର ଓ ଅଚଞ୍ଚଳ ଅବସ୍ଥାରେ ରହିଥାଏ, ଧର୍ମର ସିଦ୍ଧାନ୍ତକୁ ଯିଏ ସ୍ୱଷ୍ଟ ଭାବରେ ହୃଦୟଙ୍ଗମ କରିଥାନ୍ତି, ସେ ସାଧାରଣ ମଣିଷଙ୍କ ତୁଳନାରେ ଅଧିକ ଆନନ୍ଦ ଅନୁଭବ କରନ୍ତି ।

ମାଳତୀ ଲତାରୁ ଫୁଲ ଫୁଟି ମଉଳି ଝଡ଼ି ପଡୁଥିବା ପରି ହେ ଭିକ୍ଷୁ, ତୁମଠାରେ ଥିବା କାମ ଓ ଘୃଣା ଭାବ ମଉଳି ଝଡ଼ି ପଡ଼ି ସଂପୂର୍ଣ୍ଣ ରୂପେ ନିଶ୍ଚିହ୍ନ ହୋଇଯାଉ ।

ଯେଉଁ ଭିକ୍ଷୁ ଯୁବାବସ୍ଥାରେ ବୁଦ୍ଧଙ୍କର ଉପଦେଶ ଅନୁସାରେ ଜୀବନଯାପନ କରିବା ପାଇଁ ନିଜକୁ ସଂପୂର୍ଣ୍ଣ ରୂପେ ସମର୍ପିତ କରି ଦେଇଥାନ୍ତି, ସେ ମେଘମୁକ୍ତ ଆକାଶରେ ଚନ୍ଦ୍ରମା ପରି ସଂସାରକୁ ଆଲୋକିତ କରିଥାନ୍ତି ।

ଯେପରି କୁଶ ଘାସକୁ ବିପରୀତ ଭାବରେ ଧରିଲେ ହାତ କଟିଯାଏ, ସେହିପରି ଜଣେ ସନ୍ନ୍ୟାସୀର ବୀତରାଗ ଜୀବନ ଯଦି ଭୁଲ୍ ମାର୍ଗରେ ଗତି କରେ, ତା'ହେଲେ ସେ ନରକଗାମୀ ହୋଇଥାଏ ।

ଯେଉଁ ସାଧୁ କାହାରି ଅନିଷ୍ଟ କରନ୍ତି ନାହିଁ, ଯାହାଙ୍କର ଶରୀର ସଂପୂର୍ଣ୍ଣ ସଂଯତ ଅବସ୍ଥାରେ ରହିଥାଏ, ସେ ମୃତ୍ୟୁହୀନ ଅବସ୍ଥା ପ୍ରାପ୍ତ ହୋଇଥାନ୍ତି, ଯେଉଁଠାକୁ ଗଲେ ମଧ୍ୟ ସେମାନେ ଦୁଃଖ-ମୁକ୍ତ ରହନ୍ତି ।



# ଧର୍ମ ପ୍ରଚାରକ

ତଥାଗତ ଶିଷ୍ୟମାନଙ୍କୁ କହିଲେ—

ଯେତେବେଳେ ମୋର ତିରୋଧାନ ହୋଇଯିବ, ଆଉ ମୁଁ ତୁମମାନଙ୍କୁ ଉପଦେଶ ଦେବା ପାଇଁ ନ ଥିବି, ଧାର୍ମିକ ପ୍ରବଚନ ଦ୍ୱାରା ତୁମମାନଙ୍କର ମନକୁ ଉଚ୍ଚାବସ୍ଥାରେ ପହଞ୍ଚାଇବା ପାଇଁ ନ ଥିବି, ସେତେବେଳେ ତୁମେମାନେ ମୋ ସ୍ଥାନରେ ତୁମ ଭିତରୁ ଜଣେ ଯୋଗ୍ୟ ବ୍ୟକ୍ତିଙ୍କୁ ନିର୍ବାଚିତ କରିବ, ଯିଏ କି ସତ୍ୟ-ଧର୍ମର ଉପଦେଶ ଦେଇପାରିବେ । ସେହି ବ୍ୟକ୍ତିଙ୍କୁ ତଥାଗତଙ୍କ ନିବାସରେ ପ୍ରବେଶ କରି ତାଙ୍କରି ଆସନରେ ଆସୀନ ହେବାକୁ ଦେବ । ମହାନ୍ ସହିଷ୍ଣୁତା ଓ ଧୈର୍ଯ୍ୟ ହେଉଛି ତଥାଗତଙ୍କର ପରିଧାନ, ଦୟା ଓ ପ୍ରେମ ହେଉଛି ତାଙ୍କର ନିବାସ ଏବଂ ସତ୍ୟ-ଧର୍ମର ଉପଯୁକ୍ତ ପ୍ରୟୋଗର ଧାରଣା ହେଉଛି ତାଙ୍କର ଆସନ ।

ଧର୍ମ ପ୍ରଚାରକ ପ୍ରଶସ୍ତ ବୋଧଶକ୍ତିର ଅଧିକାରୀ ହୋଇ ସତ୍ୟର ପ୍ରଚାର କରିବା ଉଚିତ । ତାଙ୍କଠାରେ ସଦ୍‌ଗୁଣ ଓ ସଂକଳ୍ପ ପ୍ରତି ଦୃଢ଼ ନିଷ୍ଠା ରହିଥିବା ଦରକାର, ଯାହା ଫଳରେ କି ସେ ଅନ୍ୟମାନଙ୍କୁ ସତ୍ୟନିଷ୍ଠ ହେବା ପାଇଁ ପ୍ରବର୍ତ୍ତାଇ ପାରିବେ ।

ଧର୍ମ ପ୍ରଚାରକ ଉଚିତ ଆଚରଣ ପ୍ରଦର୍ଶନ କରିବା ଉଚିତ ଏବଂ ଧୀର, ସ୍ଥିର ଓ ଶାନ୍ତ ହେବା ଦରକାର । ସେ ନିଜର ମିଥ୍ୟା ଅହଂକାରକୁ ତୁଷ୍ଟ କରିବାକୁ ଯାଇ ବଡ଼ ଲୋକମାନଙ୍କ ସଙ୍ଗ ଲାଭ ନିମନ୍ତେ ଲାଳାୟିତ ହେବା ଉଚିତ ନୁହେଁ । ସେ ନୀଚ ପ୍ରକୃତିର ଓ ଅନୈତିକ ଲୋକମାନଙ୍କଠାରୁ ଦୂରରେ ରହିବେ । ସଂସାରର ପ୍ରଲୋଭନ ତାଙ୍କୁ ଆଲୋଡ଼ିତ କରୁଥିଲେ, ସେ ନିରନ୍ତର ବୁଦ୍ଧଙ୍କୁ ସ୍ମରଣ କରିବେ । ତେବେ ଯାଇ ସେ ଜୟ ଲାଭ କରିବେ ।

ଜଣେ ଧର୍ମ ପ୍ରଚାରକ ଅନ୍ୟ ଜଣେ ଧର୍ମ ପ୍ରଚାରକଙ୍କର ଛିଦ୍ର ଅନ୍ୱେଷଣ କରିବା, ତାଙ୍କର ନିନ୍ଦା କରିବା, ମିଥ୍ୟା ଅପବାଦ ରଟିବା କିମ୍ବା ତାଙ୍କ ପ୍ରତି କଟୁ ଶବ୍ଦ ପ୍ରୟୋଗ କରିବା ଉଚିତ ନୁହେଁ । ଧର୍ମ ବିଷୟ ଶୁଣିବାକୁ

ଆସୁଥିବା ଲୋକମାନଙ୍କୁ ଧର୍ମ ପ୍ରଚାରକ କରୁଣା ଓ ସ୍ନେହପୂର୍ଣ୍ଣ ହୃଦୟରେ ଗ୍ରହଣ କରିବେ ।

ଧର୍ମପ୍ରଚାରକ ସର୍ବଦା ପ୍ରସନ୍ନ, କର୍ମତତ୍ପର ଓ ବୀର୍ଯ୍ୟବାନ ହେବା ଦରକାର । ସେ କେତେବେଳେ ହେଲେ ଥକି ପଡ଼ିବା ଉଚିତ ନୁହେଁ । ଅନ୍ତିମ ସଫଳତା ପ୍ରାପ୍ତି ନିମନ୍ତେ ସେ ଆଶାୟୀ ହୋଇ ସାଧନାରତ ହେବା ଉଚିତ । ଯେଉଁମାନେ ତାଙ୍କ ନିକଟକୁ ଧର୍ମ ପ୍ରସଙ୍ଗ ଶୁଣିବାକୁ ଆସିବେ, ସେ ସେମାନଙ୍କୁ ଉଦାରତା ସହକାରେ ସ୍ୱାଗତ ଜଣାଇବେ ଏବଂ ଯାହା ଉପଦେଶ ଦେବେ ସେଥିରେ ଆତ୍ମବଡ଼ିମା ଯେପରି ପ୍ରଦର୍ଶିତ ନ ହୁଏ । ଧର୍ମ ପ୍ରଚାରକଙ୍କ ହୃଦୟରେ କୌଣସି ବନ୍ଧୁତ୍ୱହୀନ ଭାବନା ରହିବା ଉଚିତ ନୁହେଁ । ସକଳ ପ୍ରାଣୀଙ୍କର ହିତସାଧନ କରିବା ତାଙ୍କ ଜୀବନର ବ୍ରତ ହୋଇ ରହିବା ଉଚିତ ।

ଧର୍ମ ପ୍ରଚାରକଙ୍କ ସତ୍ୟବଚନ ପ୍ରତି ଶ୍ରୋତାମାନେ ଧ୍ୟାନ ଦେଉ ନ ଥିଲେ, ସେ ସେମାନଙ୍କ ମନକୁ ଛୁଇଁବା ଭଳି ଭାଷାରେ ଉପଦେଶମାନ ଦେଇ ସେମାନଙ୍କ ଧ୍ୟାନ ଆକର୍ଷିତ କରିବା ଉଚିତ । ତାଙ୍କର ଉଦ୍ଦେଶ୍ୟ ହେବ ଧର୍ମ ବିଷୟରେ ଶୁଣୁଥିବା ଶ୍ରୋତାଗଣ ଯେପରି ଧର୍ମାନୁଶୀଳନ କରି ବୁଦ୍ଧତ୍ୱ ଲାଭ କରିବେ ।

ହେ ଭଦ୍ରଗଣ, ତୁମେ ସବୁ ଯେଉଁମାନେ ତଥାଗତଙ୍କର ବାଣୀକୁ ପ୍ରଚାର କରିବା ପାଇଁ ବ୍ରତ ନେଇଛ, ତୁମମାନଙ୍କ ହାତରେ ସେହି ମହାଭାଗ ଆଜି ସତ୍ୟଧର୍ମକୁ ଅର୍ପଣ କରୁଛନ୍ତି ଓ ସମାବିଷ୍ଟ କରୁଛନ୍ତି ।

ତୁମେ ସବୁ ସେହି ସତ୍ୟଧର୍ମକୁ ଗ୍ରହଣ କର, ତାହାକୁ ସୁରକ୍ଷିତ କରି ରଖ, ତାହାକୁ ବାରମ୍ବାର ପଠନ କର, ମନନ କର, ପ୍ରକାଶିତ କର ଏବଂ ବିଶ୍ୱର କୋଣେ କୋଣେ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ପ୍ରଚାର କର ।

ତଥାଗତ ଲୋଭୀ ନୁହଁନ୍ତି, ସେ ସଂକୀର୍ଣ୍ଣମନା ନୁହଁନ୍ତି, ଯେଉଁମାନେ ତାଙ୍କୁ ଗ୍ରହଣ କରିବାକୁ ବ୍ୟାକୁଳ, ସେ ସେମାନଙ୍କୁ ପୂର୍ଣ୍ଣ ବୁଦ୍ଧଜ୍ଞାନ ପ୍ରଦାନ କରିବାକୁ ଇଚ୍ଛୁକ । ତୁମେ ସବୁ ତାଙ୍କ ପରି ହୁଅ, ତାଙ୍କ ପରି ସତ୍ୟକୁ ମୁକ୍ତ

ହସ୍ତରେ ସର୍ବତ୍ର ବିତରଣ କର, ପ୍ରଦର୍ଶିତ କର ଓ ଅର୍ପଣ କର ଏବଂ ଜୀବନରେ ତାଙ୍କରି ପଦାଙ୍କ ଅନୁସରଣ କର ।

ଧର୍ମର ଏହି କଲ୍ୟାଣପ୍ରଦ ଓ ପ୍ରଶାନ୍ତି-ପ୍ରଦାନକାରୀ ଅମୃତମୟ ବାଣୀ ଶୁଣିବା ପାଇଁ ଇଚ୍ଛା କରୁଥିବା ହେ ମୋର ଶ୍ରୋତାବନ୍ଧୁଗଣ ! ତୁମେମାନେ ମୋ ନିକଟରେ ଏକତ୍ରିତ ହୁଅ । ଯେଉଁମାନେ ଅବିଶ୍ୱାସୀ, ସେମାନଙ୍କୁ ଏହି ସତ୍ୟକୁ ଗ୍ରହଣ କରିବା ପାଇଁ ଜାଗ୍ରତ କରାଅ ଏବଂ ସେମାନଙ୍କ ହୃଦୟକୁ ଆନନ୍ଦ ଉଲ୍ଲାସରେ ପରିପୂର୍ଣ୍ଣ କରିଦିଅ, ସେମାନଙ୍କୁ ପ୍ରେରଣା ଦିଅ, ସେମାନଙ୍କୁ ଉପଦେଶ ଦିଅ, ସେମାନେ ଯେପର୍ଯ୍ୟନ୍ତ ସତ୍ୟର ସମସ୍ତ ବୈଭବ ଓ ମହତ୍ତ୍ୱକୁ ଉପଲବ୍ଧି ନ କରିଛନ୍ତି, ସେପର୍ଯ୍ୟନ୍ତ ସେମାନଙ୍କୁ ଆଧ୍ୟାତ୍ମିକ ମାର୍ଗରେ ଉଚ୍ଚରୁ ଉଚ୍ଚତର ସ୍ତରକୁ ଉଠାଅ ।

ହଜାରେ ନିରର୍ଥକ ଶବ୍ଦ ପ୍ରୟୋଗ କରିବା ଅପେକ୍ଷା ଗୋଟିଏ ମାତ୍ର ଉପଯୋଗୀ ଓ ତାତ୍ପର୍ଯ୍ୟପୂର୍ଣ୍ଣ ବାକ୍ୟ କୁହ, ଯାହାକୁ ଶୁଣିଲେ ମନୁଷ୍ୟ ଶାନ୍ତି ପାଇବ ।

ସଦାଚାରୀ ବ୍ୟକ୍ତି ସବୁକିଛି ତ୍ୟାଗ କରି ଦେଇଥାଏ । ସାଧୁ ପ୍ରକୃତିର ଲୋକ କାମନା ପ୍ରଣୋଦିତ ହୋଇ କାର୍ଯ୍ୟ କରେ ନାହିଁ ।

ବିବେକୀ ବ୍ୟକ୍ତି ସୁଖ, ଦୁଃଖ ଦ୍ୱାରା ପ୍ରଭାବିତ ନ ହୋଇ ହର୍ଷୋତ୍‌ଫୁଲ୍ଲ ହୁଏ ନାହିଁ କିମ୍ବା ବିଷାଦଗ୍ରସ୍ତ ହୁଏ ନାହିଁ । ସେ ସବୁ ଅବସ୍ଥାରେ ସମାନ ରହିଥାଏ ।



# ବିବିଧ ପ୍ରସଙ୍ଗ

ତଥାଗତ କହିଲେ—ତୁମେ କେବଳ ସ୍ୱପ୍ନ ଦେଖ ନାହିଁ, ଜାଗି ଉଠ, ଆଉ ବୃଥାରେ କାଳ କ୍ଷେପଣ କର ନାହିଁ । ତୁମେ ସତ୍ୟ ନିକଟରେ ନିଜ ମନକୁ ଅନାବୃତ କର, ଧର୍ମ ଆଚରଣ କର ଏବଂ ନିର୍ବାଣର ଶାଶ୍ୱତ ଆନନ୍ଦ ପ୍ରାପ୍ତ ହୁଅ ।

ଯେଉଁ ବ୍ୟକ୍ତି ଅଷ୍ଟାଙ୍ଗିକ ମାର୍ଗ ଅନୁସରଣ କରି ଜୀବନଯାପନ କରନ୍ତି, ସେ ସଦାସର୍ବଦା ଆନନ୍ଦରେ ରହିଥାନ୍ତି । ଯେଉଁ ବ୍ୟକ୍ତି ଧନ ସମ୍ପଦ ମଧ୍ୟରେ ବୁଡ଼ି ରହିଛନ୍ତି, ମୋର ସେମାନଙ୍କୁ ଏତିକି ଉପଦେଶ ଯେ ସେମାନେ ବିଷୟାସକ୍ତ ହୋଇ ହୃଦୟକୁ ବିଷ ଜର୍ଜରିତ କରିବା ଅପେକ୍ଷା, ନିଜକୁ ଭୋଗରୁ ଦୂରରେ ରଖନ୍ତୁ । ଯେଉଁ ବ୍ୟକ୍ତିଙ୍କର ଧନସଂପତ୍ତି ପ୍ରତି କୌଣସି ଆସକ୍ତି ନାହିଁ ଏବଂ ସେମାନେ ସେମାନଙ୍କ ପାଖରେ ଥିବା ଧନର ସଦୁପଯୋଗ କରନ୍ତି, ସେମାନେ ସଂସାରରେ ଲୋକମାନଙ୍କ ପାଇଁ ବରଦାନ ସ୍ୱରୂପ ରହିଥାନ୍ତି ।

ତୁମେ ଯେଉଁ କର୍ମ କରି ଜୀବନ ବିତାଉଥାଅ ନା କାହିଁକି, ନିଜର କର୍ମକୁ ନିଷ୍ଠା ଓ ପରିଶ୍ରମପୂର୍ବକ ସମ୍ପନ୍ନ କର । ଜୀବନରେ ସୁଖଭୋଗ, ଧନସମ୍ପତ୍ତି ଓ କ୍ଷମତା ମନୁଷ୍ୟକୁ ବାନ୍ଧି ରଖେ ନାହିଁ । ବରଂ ସେଥିପ୍ରତି ରହିଥିବା ତୀବ୍ର ଆସକ୍ତି ହିଁ ତାକୁ ବାନ୍ଧି ରଖିଥାଏ ।

ତଥାଗତଙ୍କର ଧର୍ମ ହେଲା, ମନୁଷ୍ୟ ଏଥି ନିମନ୍ତେ ଅନ୍ତଃପ୍ରେରଣା ନ ପାଇବା ପର୍ଯ୍ୟନ୍ତ ଏହା କାହାରିକୁ ଘର ସଂସାର ତ୍ୟାଗ କରିଦେବାକୁ କହେ ନାହିଁ । ବରଂ ତଥାଗତଙ୍କ ଧର୍ମ କହେ, ପ୍ରତ୍ୟେକ ବ୍ୟକ୍ତି ନିଜକୁ ଅହଂକାରର ଭ୍ରାନ୍ତ ଚେତନାରୁ ମୁକ୍ତ ରଖନ୍ତୁ, ହୃଦୟକୁ ସ୍ୱଚ୍ଛ ଓ ନିର୍ମଳ କରନ୍ତୁ, ସୁଖଭୋଗ ଲାଳସା ତ୍ୟାଗ କରନ୍ତୁ ଏବଂ ସଦାଚାରୀ ଜୀବନଯାପନ କରନ୍ତୁ ।

ଆମେ ଶୁଭ ଓ ଅଶୁଭ କର୍ମ ଯାହାକିଛି କରିଥାଉ, ସେହି କର୍ମର ଫଳ, ଆମ ପଛେ ପଛେ ଛାଇ ପରି ଧାଇଁଥାଏ । ବିବେକୀ ବ୍ୟକ୍ତି ଶରୀରକୁ କ୍ଷଣିକ

ସୁଖ ଦେବା କାର୍ଯ୍ୟରୁ ବିରତ ରହିଥାନ୍ତି, ସେମାନେ କାମପିପାସାକୁ ଉପେକ୍ଷା କରିଥାନ୍ତି ଏବଂ ନିଜର ଆଧ୍ୟାତ୍ମିକ ଜୀବନକୁ ବିକଶିତ କରିବାକୁ ପ୍ରଯତ୍ନଶୀଳ ହୋଇ ରହିଥାନ୍ତି । ବୃକ୍ଷ ପ୍ରଚଣ୍ଡ ଅଗ୍ନିରେ ଜଳୁଥିଲେ, ସେଥିରେ ପକ୍ଷୀମାନେ ବାସ କରିବେ କିପରି ? ସେହିପରି ଯାହାଙ୍କଠାରେ ତୀବ୍ର କାମ ଲାଳସା ରହିଛି, ସେଠାରେ ସତ୍ୟ ତିଷ୍ଠି ରହିପାରିବ ନାହିଁ । କାମ ବାସନାର ଉତ୍ତାଳ ତରଙ୍ଗ ବଡ଼ ଭୟାନକ । ଏହା ମନୁଷ୍ୟକୁ କୁପଥଗାମୀ କରି ଦେଇଥାଏ । ଯେଉଁ ବ୍ୟକ୍ତି ଏହାର ମଧ୍ୟରେ ପଡ଼ିଯାଇଥାନ୍ତି, ସେଥିରୁ ସେ ବର୍ତ୍ତି ପାରନ୍ତି ନାହିଁ । କିନ୍ତୁ ବିବେକୀ ବ୍ୟକ୍ତିର ପ୍ରଜ୍ଞା ହେଉଛି ଏକ କ୍ଷୁଦ୍ର ନୌକାପରି ଏବଂ ତାଙ୍କର ଅନୁଚିନ୍ତନ ମଙ୍ଗ ସଦୃଶ କାର୍ଯ୍ୟ କରିଥାଏ । ତେଣୁ ସେ ଏହି ଭଉଁରୀ ମଧ୍ୟରେ ପଡ଼ନ୍ତି ନାହିଁ । ଧର୍ମର ସିଂହନାଦ ତୁମକୁ କାମ-ବାସନା-ରୂପୀ 'ମାର'(ଶତ୍ରୁ)ର କବଳରୁ ମୁକ୍ତ କରିବା ପାଇଁ ଆହ୍ୱାନ ଦେଉଛି ।

କର୍ମର ଫଳ ମନୁଷ୍ୟକୁ ନିଶ୍ଚିତ ଭାବରେ ଭୋଗ କରିବାକୁ ପଡ଼ିଥାଏ । ସୁତରାଂ ସତ୍‌କର୍ମ କର, ସତ୍‌ଚିନ୍ତା କର । ତୁମେ ସଦାଚରଣ ଓ ବିଚାର ବିବେକର ପ୍ରୟୋଗ ଦ୍ୱାରା ନିଜର ଉତ୍କୃଷ୍ଟତା ପ୍ରତିପାଦନ କର । ସାଂସାରିକ ବସ୍ତୁର ଅସାରତା ସମ୍ବନ୍ଧରେ ଗଭୀର ଚିନ୍ତା କର ଏବଂ ଜୀବନର ନଶ୍ୱରତା ପ୍ରତି ଧ୍ୟାନ ଦିଅ ।

ଅନ୍ୟର ଦୋଷତ୍ରୁଟି ଦେଖିବା ଅତି ସହଜ କିନ୍ତୁ ନିଜର ଦୋଷକୁ ଦେଖିବା ଅତି କଠିନ । ପଡ଼ୋଶୀର ଦୋଷ ସହଜରେ ଦୃଷ୍ଟିରେ ପଡ଼େ, ଅଥଚ ମନୁଷ୍ୟ ନିଜର ଦୋଷକୁ ଢାଙ୍କି ରଖିଥାଏ । ଯେଉଁ ବ୍ୟକ୍ତି ବିବାଦରତ ଉଭୟ ପକ୍ଷଙ୍କ କଥା ଧୈର୍ଯ୍ୟ ସହକାରେ ଶୁଣିବା ପରେ ପ୍ରତ୍ୟେକ ପକ୍ଷର ସଠିକ୍ ମୂଲ୍ୟାଙ୍କନ କରନ୍ତି, ସେ ହେଉଛନ୍ତି ଜଣେ ମୁନି । ତେଣୁ ଉଭୟ ପକ୍ଷଙ୍କ କଥା ଶୁଣି ସାରିବା ପରେ ସଂଘକୁ ସେମାନଙ୍କ ମଧ୍ୟରେ ବୁଝାମଣା କରିବାକୁ ଏବଂ ସମନ୍ୱୟ ପ୍ରତିଷ୍ଠା ହେବାର ଘୋଷଣା କରିବାକୁ ଦିଅ ।

କ୍ରୋଧରେ ଜର୍ଜରିତ ହୋଇ ଯେଉଁ ବାକ୍ୟ ପ୍ରୟୋଗ କରାଯାଏ, ତାହା ହେଉଛି ଧାରୁଆ ତରବାରି ସଦୃଶ । ଲୋଲୁପ ଦୃଷ୍ଟି ହେଉଛି ମାରାତ୍ମକ

ବିଷ ପରି; କାମାଗ୍ନି ହେଉଛି ପ୍ରଚଣ୍ଡ ଅଗ୍ନି ପରି ଏବଂ ଅଜ୍ଞାନ ହେଉଛି ଘନ ଅନ୍ଧକାର ରାତ୍ରି ପରି ।

ଅଜ୍ଞାନ ହିଁ ସଂସାରକୁ ଧ୍ୱସ୍ତବିଧ୍ୱସ୍ତ କରି ଦେଇଥାଏ । ଈର୍ଷା ଓ ସ୍ୱାର୍ଥପରତା ବନ୍ଧୁତାକୁ ଭାଙ୍ଗି ଚୁର୍‌ମାର କରି ଦେଇଥାଏ । ଘୃଣା ଓ ଦ୍ୱେଷ ହେଉଛି ଅତି ଭୟାନକ ଜ୍ୱର, ଆଉ ବୁଦ୍ଧ ହେଉଛନ୍ତି ଏହାର ଉପଶମର ସର୍ବଶ୍ରେଷ୍ଠ ବୈଦ୍ୟ ।

ଯେଉଁ ଦୁଷ୍ଟ ବ୍ୟକ୍ତି ଜଣେ ସଜ୍ଜନଙ୍କୁ ଖରାପ ଭାଷାରେ ଗାଳି ଦେଇ ଅପମାନିତ କରେ, ସେ ଆକାଶକୁ ଅନାଇ ଉପରକୁ ଛେପ ପକାଇବା ପରି କାର୍ଯ୍ୟ କରିଥାଏ, କାରଣ ସେହି ଛେପ ଆକାଶକୁ ଦୂଷିତ ନ କରି ତଳକୁ ଫେରିଆସେ ଏବଂ ସେହି ଦୁଷ୍ଟ ବ୍ୟକ୍ତି ଉପରେ ପଡ଼ି ତାକୁ ହିଁ ଦୂଷିତ କରିଥାଏ ।

କୌଣସି ବ୍ୟକ୍ତି କାହାରିକୁ ଠକି ଦେବା ଉଚିତ ନୁହେଁ, କାହାରିକୁ ଅପମାନିତ କରିବା ଉଚିତ ନୁହେଁ ଏବଂ କ୍ରୋଧର ବଶବର୍ତ୍ତୀ ହୋଇ କାହାରି କ୍ଷତି କରିବା ଉଚିତ ନୁହେଁ ।

ଯାହାର କାମ-ବାସନା ବିନଷ୍ଟ ହୋଇଯାଇଛି, ଯିଏ ଅହଂକାରରୁ ସଂପୂର୍ଣ୍ଣ ମୁକ୍ତ, ଯିଏ ସମସ୍ତ ପ୍ରକାର କାମନାର ବିନାଶ ଘଟାଇ ପାରିଛନ୍ତି, ସେହି ବ୍ୟକ୍ତି ହେଉଛନ୍ତି ସୁଖଶାନ୍ତିର ଅଧିକାରୀ ଏବଂ ଦୃଢ଼ମନା । ଏପରି ବ୍ୟକ୍ତି ସଂସାରରେ ସତ୍-ମାର୍ଗରେ ଜୀବନଯାପନ କରିଥାନ୍ତି । ଶ୍ରଦ୍ଧାବାନ, ସଦ୍‌ଗୁଣସମ୍ପନ୍ନ ଓ ପ୍ରତିଷ୍ଠା ଅର୍ଜନ କରିଥିବା ବ୍ୟକ୍ତି ଯେଉଁଠାକୁ ଯାଆନ୍ତି, ସେଠାରେ ତାଙ୍କୁ ସମ୍ମାନ ମିଳିଥାଏ ।

ଯେପରି ଅତି ଗଭୀରକୁ ଚେର ମାଡ଼ିଥିବା ବୃକ୍ଷକୁ ସଂପୂର୍ଣ୍ଣ ନିର୍ମୂଳ ନ କରି ଯେତେ କାଟିଲେ ବି ତାହା ପୁଣି ବଢ଼ିଥାଏ, ସେହିପରି ମନରେ ଦୃଢ଼ ଭାବରେ ବସା ବାନ୍ଧି ରହିଥିବା ତୃଷ୍ଣା ସଂପୂର୍ଣ୍ଣ ରୂପେ ଦୂର ନ ହେଲେ ଦୁଃଖ ବାରମ୍ବାର ସୃଷ୍ଟି ହୋଇଥାଏ ।

ଯେଉଁ ବ୍ୟକ୍ତି ସଂସାରରେ ଏହି ପ୍ରଚଣ୍ଡ ତୃଷ୍ଣାକୁ ପରାଜିତ କରିଥାନ୍ତି, ତାଙ୍କୁ ଦୁଃଖ ସ୍ପର୍ଶ କରେ ନାହିଁ, ଯେପରି ପଦ୍ମପତ୍ରକୁ ଜଳବୁନ୍ଦା ସ୍ପର୍ଶ କରିପାରି ନ ଥାଏ ।

ତୁମ ନିଜକୁ ହିଁ ଉଦ୍ୟମଶୀଳ ହେବାକୁ ପଡ଼ିବ । ତଥାଗତ ଜଣେ ଶିକ୍ଷକ ମାତ୍ର । ଯେଉଁ ବ୍ୟକ୍ତି ଧ୍ୟାନ ମାର୍ଗରେ ପ୍ରବେଶ କରନ୍ତି, ସେ ମାର-ପାଶରୁ ମୁକ୍ତ ହୋଇଥାନ୍ତି ।

ଯେପରି ଲୁହାରେ କଳଙ୍କି ଲାଗିଯାଇ ଲୁହାର ଅଂଶବିଶେଷ ହୋଇ ରହିଥିଲେ ସୁଦ୍ଧା, ଏହା ଲୁହାକୁ ଖାଇଯାଏ, ଠିକ୍ ସେପରି ପାପୀ ଲୋକର କର୍ମ ତାର ନିଜ ଭିତରେ ଥାଇ ତାକୁ ଦୁର୍ଗତି ଆଡ଼କୁ ଟାଣି ନେଇଥାଏ ।

ମନୁଷ୍ୟର ସ୍ୱାସ୍ଥ୍ୟ ହେଉଛି ସର୍ବୋତ୍କୃଷ୍ଟ ଲାଭ । ସନ୍ତୋଷ ହେଉଛି ମହତ୍ତମ ସଂପଦ, ଗୋପନୀୟତା ହେଉଛି ପରମ ବନ୍ଧୁ ଏବଂ ନିର୍ବାଣ ହେଉଛି ପରମ ଆନନ୍ଦ ।

ବିଜୟ ଲାଭ, ବିଜେତା ମନରେ ଦ୍ୱେଷ ଉତ୍ପନ୍ନ କରିଥାଏ । ପରାଜୟ, ପରାଜିତ ବ୍ୟକ୍ତି ମନରେ ଗ୍ଲାନି ସୃଷ୍ଟି କରିଥାଏ । ଉଭୟ ବିଜୟ ଓ ପରାଜୟକୁ ତ୍ୟାଗ କଲେ ଯାଇ ଜୀବନରେ ପ୍ରକୃତ ସୁଖଶାନ୍ତି ବିରାଜମାନ କରେ । କାମାଗ୍ନି ସମାନ କୌଣସି ଅଗ୍ନି ନାହିଁ, ଦ୍ୱେଷ ପରି କୌଣସି ଅପରାଧ ନାହିଁ, ଦେହାତ୍ମବୋଧ ପରି କୌଣସି ଅଜ୍ଞତା ନାହିଁ ଆଉ ନିର୍ବାଣ ପରି କୌଣସି ଶ୍ରେଷ୍ଠତମ ଆନନ୍ଦ ନାହିଁ ।

